# କାହାଣୀ ପେଡି







ଶ୍ରୀମତୀ ବସନ୍ତକୁମାରୀ ଦେବୀ

# କାହାଣୀ ପେଡି



ଶ୍ରୀମତୀ ବସନ୍ତ କୁମାରୀ ଦେବୀ

ପ୍ରକାଶ - ପରିଚାଳନା
ଶ୍ରୀମତୀ ବସନ୍ତକୁମାରୀ ଦେବୀ
ଆର୍ମଷ୍ଟ୍ରଙ୍ଗ୍ ରୋଡ୍, ପୁରୀ



ଚିତ୍ର ଶିଳ୍ପୀ
ଶ୍ରୀ ଅସିତ ମୁଖାର୍ଜି



ମୁଦ୍ରଣାଳୟ
ଶ୍ରୀ ପ୍ରିଣ୍ଟର୍ସ, ପୁରୀ



ପ୍ରକାଶ ଲଗ୍ନ
ଅକ୍ଷୟ ତୃତୀୟା, ୧୩୭୦



ଚୌଷଠି ନୂଆପଇସା

# ମିନା ଓ ପରୀରାଇଜ

ବଗିଚ୍ଚାର ଗଛମୂଳେ ବସି ମିନା ସେଦିନ ରାଗରେ ଗର ଗର ହେଉଥିଲା । ଆଜି ସେ ନିଶ୍ଚୟ ଘର ଛାଡ଼ି ଚାଲିଯିବ । ଏ ଦୁଷ୍ଟ ମା'ଙ୍କ ପାଖରେ ଆଉ ସେ ରହିବନି । ମା ଆଜି ତାକୁ ଖୁବ୍ ଗାଳି ଦେଇଛନ୍ତି — କଣ ନା, ମିନା ସବୁବେଳେ ସେ ପାଠ ଗୁଡାକ ପଢ଼ିବ...... ଛିଃ, ସେ ପାଠ ପଢ଼ାକୁ ମିନା ଜମା ପସନ୍ଦ କରେନି । ସେ ଖାଲି ଖେଳିବ, ଖେଳିବାକୁ ତାକୁ ଭଲ ଲାଗେ; ସେ ସେଇୟା କରିବ । ଜାମାପଟା, ଦେହ ହାତ ମଇଳା ହେଲେ କଣ ହେଲା ? ମିନା ନିଶ୍ଚୟ ଖେଳିବ, ସେଇଥିପାଇଁ ମା ଖାଲି ଗାଳି ଦେଉଛନ୍ତି ସବୁବେଳେ । ତାଙ୍କ ପାଖରେ ସେ ଆଉ ରହିବନି, ଚାଲିଯିବ । ଚାଲିଯିବ ସେଇଠାକୁ, ଯୋଉଠି ସେ ମନଇଚ୍ଛା ଖେଳି ପାରିବ, ବୁଲି ପାରିବ — ମା ଆଉ ଶାସନ କରିବାକୁ ସେଠି ନ ଥିବେ । ହେଲେ ଏକୁଟିଆ କୁଆଡକୁ ଯିବା ତ ମୁସ୍କିଲ୍, ସାଙ୍ଗଟେ ମିଳିଲେ ହୁଅନ୍ତା । କୁନାକୁ କେତେ ଡ଼ାକିଲା ମିନା, କୁନା କିନ୍ତୁ ମା'ଙ୍କୁ ଛାଡି ଯିବାକୁ ନାରାଜ । ଇସ୍, ଖାଲି କୁନା ଛଡ଼ା ଆଉ କଣ କିଏ ସାଙ୍ଗ ମିଳିବେନି ମିନାକୁ ? ......ନିଶ୍ଚେ ମିଳିବେ ।

ହଠାତ୍ କିଏ ତା ପାଖରୁ କହିଲା, "ତମ ସାଙ୍ଗରେ ଖେଳିବୁ ମିନା……ମତେ ସାଙ୍ଗ କରିବୁ ।"

ଚମକି ପଡ଼ି ମିନା ଚାହିଁଲା……ଇସ୍,କେଡ଼େ ସୁନ୍ଦର କୁନି ଝିଅଟେ ତା ଆଗରେ ଠିଆ ହୋଇଛି । ନାଲି ଟୁକୁଟୁକୁ ଓଠ, କଳା କଳା ଆଖି, ସୁନ୍ଦର ଉଜ୍ଜ୍ୱଳ ଡାଉଳ ମୁହଁଟି, କେଡ଼େ ସୁନ୍ଦର କୁଞ୍ଚୁକୁଞ୍ଚିଆ କଳା ବାଳ । ଭାରି ସୁନ୍ଦର ନାଲି ଜାମାଟିଏ ପିନ୍ଧିଛି । ସବୁଠାରୁ ମଜାକଥା ହେଉଛି ଯେ ତା ପିଠିରେ ଦି'ପଟେ ଚକ୍‌ଚକ୍ ସୁନେଲି ରଙ୍ଗର ପତଳା ପର ଯୋଡ଼ାଏ ଲାଗିଛି ଠିକ୍ ପ୍ରଜାପତିର ପର ଭଳି ।

ଆଶ୍ଚର୍ଯ୍ୟ ହୋଇ ମିନା ଚାହିଁ ରହିଲା । ତା ତୁଣ୍ଡରୁ କଥା ପଦେ ବାହାରିଲାନି । ଝିଅଟି ମିନାର ହାତଟିକୁ ଧରିଲା । ଆଉ ଥରେ କହିଲା, "ମୋ ସାଙ୍ଗ ହବୁ ?"

ଏଡ଼େ ସୁନ୍ଦର ସାଙ୍ଗଟିଏ ମିଳିଲା । ମିନା 'ହଁ' କହି ମୁଣ୍ଡ ଟୁଙ୍ଗାରିଲା । ହେଲେ କଥାବାର୍ତ୍ତା ହବାକୁ ତାର ସାହସ ପାଉ ନଥାଏ । ଏ ଝିଅଟି କିଏ ? ଇମିତି ଆଶ୍ଚର୍ଯ୍ୟ ପର ଯୋଡ଼ାଏ କାହିଁକି ତା ପିଠିରେ ଲାଗିଛି ? ମିନା ଅବାକ୍ ହୋଇ ସେ ପର ଦି'ଟାକୁ ଚାହିଁ ରହିଲା ।

"ତମକୁ ଆଶ୍ଚର୍ଯ୍ୟ ଲାଗୁଛି ନା ମୋର ଏ ପର ଦି'ଟାକୁ ଦେଖି ?" ହସି ହସି ଝିଅଟି କହିଲା, "ମୁଁ ହଉଛି ପରୀ ରାଇଜର ଝିଅ । ମୋ ନାଁ ଗୀତା । ଆମ ରାଇଜର ସବୁ ଲୋକଙ୍କର ଇମିତି ପର ଅଛି । ଆମେ ସବୁ ଯୋଉଠିକୁ ଇଚ୍ଛା ଉଡ଼ି ଯାଇପାରୁ । ତୁ ଯିବୁ ଆମ ରାଇଜକୁ ? ମୋର ମା'ଙ୍କୁ ମୋ ସାନ ଭାଇ ଭଉଣୀଙ୍କୁ ଦେଖି ଆସିବୁ ।"

ମିନକୁ ତ ହାତରେ ସରଗଙ୍ଠା ମିଳିଗଲା ପିମିତ । ତାର ଖୁସି ଆଉ ଦେଖେ କିଏ ? ବଡ ଖୁସି ହେଇଗଲା ମିନ, ହେଲେ ଆ:ର ଘଡ଼କୁ ମୁହଁ ଶୁଖେଇ ଦେଇ କହିଲା, "ତମର ପିନା ପର ଅଛି ଯେ ତମେ ଉଡ଼ିଯାଇ ପାରିବ ! ମୋର ତ ପର ନାଇଁ, ମୁଁ କମିତ ତମ ସାଙ୍ଗେ ଯିବ ?"

ପକ୍ଷୀ କହିଲା, "ମୁଁ ତୋ ହାତ ଧରି ନେଇଯିବ ଯେ, ଯିବୁ ତୁ ?"

ଖୁସି ହୋଇ ମିନ କହିଲା, "ହଁ ଚାଲ...ଏଇକ୍ଷଣି ଯିବା ।"

ଗୀତା ପଚାରିଲା, "ମା'କୁ ତୋର କହି ଆସିବୁନି ଯେ ତୁ ମୋ ସଙ୍ଗେ ଯାଉଛୁ ବୋଲି...ଆଉ ତୋର ଏ ଜାମାପଟା ବଦଳାଇ ଆ...ଜାମାଟା ଟିକିଏ ମଇଳା ହେଇଛି ।"

ମା'ଙ୍କ ନାଁ ଶୁଣି ମିନ ଟିକିଏ ରାଗିଗଲା । କହିଲା, "ଚାଲ, ଆମର ଆମେ ତ ଯିବା, ମା'ଙ୍କୁ କହି ଲାଭ କଣ ? ଆଉ ଜାମା ମୁଁ ବଦଳାଇବିନି ।"

ଗୀତା ଅବାକ୍ ହେଇ କହିଲା, "ମାଙ୍କୁ ତୋର ନ ଜଣେଇ ଯିବୁ ? ମୁଁ ତ ଯୁଆଡେ ଯାଏ ମୋ ମା'ଙ୍କୁ କହିକରି ଯାଏ । ଆମ ରାଇଜରେ ସେଇ ନିୟମ । ମା'ଙ୍କୁ ନ କହିଲେ ଆମେ କୁଆଡେ ଯାଇ ପାରିବୁନି..."

ମିନ କହିଲା, "ଆମ ରାଇଜରେ ସେ ନିୟମ ନାଇଁ । ତମେ ଯଦି ମତେ ନବ, ତା'ହେଲେ ଚାଲ, ଚଞ୍ଚଳ ଏଠୁ ଯିବା । ମୋ ମା ବଡ଼ ଦୁଷ୍ଟ । ମତେ ଆଜି ଭାରି ଗାଳି ଦେଇଛନ୍ତି, ମୁଁ ଆଉ ତାଙ୍କ ପାଖରେ ରହିବିନି । ତମ ସାଙ୍ଗେ ଚାଲିଯିବ ।"

ଝିଅଟି ମିନା କଥା ଶୁଣି ଅବାକ୍ ହେଇଗଲା । ଟିକଏ କଣ ଭାବିଲା, ତା'ପରେ କହିଲା, "ହଉ ଚାଲ, ଧର୍ ମୋ ହାତଟାକୁ ଜୋରରେ ଧର୍, ଅଦୌ ହାତ ଛାଡ଼ିବୁନି ହିଁ..."

ମିନା ପରୀର ହାତ ଧରିଲା । ଏଥର ପରୀ କହିଲା, "ଆଖି ବୁଜିଲୁ ଟିକଏ ।"

ମିନା ଆଖି ବୁଜିଦେଲା । କମିତି ଯେ କଣ ହେଲା, ମିନା କିଛି ଜାଣି ପାରିଲାନି । ଆଖି ଖୋଲିଲା ବେଳକୁ ସେ ଦେଖିଲା, ସେ ବି ଆକାଶରେ ଉଡୁଛି । ତା ପିଠିରେ ବି ଯୋଡ଼ାଏ ପର ଲାଗିଛି, ତେବେ ସୁନେଲି ରଙ୍ଗର ନୁହେଁ, ରୂପେଲି ରଙ୍ଗର ଯୋଡ଼ାଏ ପର । ପବନ ସିର ସିର ହେଇ ବହୁଛି । କେତେ ପାଖରେ ସବୁ ଖଣ୍ଡ ଖଣ୍ଡ ତୁଳା ଭଳି ଧଳାମେଘ ଗୁଡ଼ାକ ଭାସି ବୁଲୁଛନ୍ତି । କେତେବେଳେ ମେଘ ଭିତର ଦେଇ, କେତେବେଳେ ଉପର ଦେଇ ସେ ଦୁହେଁ ଉଡ଼ି ଚାଲିଛନ୍ତି କେଡେ ମଜାରେ ! କେତେ ଉପରକୁ ଯେ ମିନା ଉଠି ଯାଇଛି ! ତଳକୁ ଚାହିଁଲେ ଆଖି ପାଉନି । କାହିଁ କୁଆଡ଼େ ତାଙ୍କ ଘର ରହିଗଲାଣି । ପାହାଡ଼ଯାକ କେଡେ ଟିକି ଟିକି ଦିଶୁଛି । ଗଛଗୁଡ଼ାକ ସବୁ ଦିଶୁଛି ଶାଗୁଆ ଶାଗୁଆ ସୋରିଷ ପରି । ରୂପା ସୁତାଟିଏ ପରି ଦିଶୁଛି ନଈଟା । ଇସ୍, କେତେ ଉପରେ ଉଡୁଛି ମିନା । ମିନାକୁ ଏଥର ଟିକିଏ ଡର ମାଡ଼ିଲା । ସେ ଆହୁରି ଜୋରରେ ଭିଡ଼ି ଧରିଲା ଗୀତାର ହାତଟାକୁ ।

ଗୀତା ତା କାନ ପାଖକୁ ମୁହଁ ଆଣି କହିଲା, "ଡର ଲାଗୁଛି ମିନା ? କିଛି ଡର ନାହିଁମ, ହେଇ, ଆଉ ଅଳ୍ପ ବାଟ ତ ରହିଲା ।"

ସ୍ୱର୍ଗକୁ ସତ ଆଉ ଅଳ୍ପ ବାଟ ଗଲା ପରେ ଗୋଟିଏ ବଚନ ରାଜ୍ୟରେ ସେମାନେ ଯାଇ ପହଞ୍ଚିଲେ । ରଙ୍ଗ ବେରଙ୍ଗର ଫୁଲ ଫଳମୂଳ ସବୁ ଦେଖି ମିନାର ଆଖି ଝଲସିଗଲା ଯିମିତ । ସୁନାର ଗଛ ଗୁଡ଼ାକ । ହୀରା, ନୀଳା, ମୋତି, ମାଣିକ୍ୟର ଫୁଲ ଫଳ ସବୁ ଝୁଲୁଚି । ତେବେ ଆଶ୍ଚର୍ଯ୍ୟ କଥା ଯେ, ସେଇଟି ଗୋଟିଏ ହେଲେ ଚଢେଇ ନାହାନ୍ତି କି ସେ ଫୁଲ ଫଳର ବାସ୍ନା ନାହିଁ ।

ଗୀତା ମିନାର ହାତ ଧରି ତା ଘର ଭିତରକୁ ନେଇଗଲା । ଚମତ୍କାର ଘରଦ୍ୱାର । ସବୁ ଶଙ୍ଖ ମଲମଲ ପଥରରେ ତିଆରି । ଟିକିର ମା ଆସି ପହଞ୍ଚିଗଲେ । ମିନାକୁ କେଉଁଠୁ ଆଣିଛୁ, ସେ କଥା ପଚାରି କହିଲା ତା ମା'ଙ୍କୁ । ମିନା ବିଷୟରେ ସବୁ ଶୁଣି ଗୀତାର ମା ବେଶ୍ ଖୁସି ହେଲେ । ତା ହାତଧରି ପାଖକୁ ଟାଣି ନେବାକୁ ହାତ ବଢାଇ ହଠାତ୍ ଚମକି ପଡ଼ିଲେ ସେ, "ଇସ୍, ଏତେ ମଇଳା ଜାମାପଟା···ଛିଃ···ଛିଃ, ଗୋଡ଼ହାତ ଗୁଡାକ ଧୂଳିମାଟି ଲାଗି କି ମଇଳା ହେଇଛି···" କହି ପକାଇଲେ ସେ ।

ମିନା ନିଜ ଦେହକୁ ଆଉ ଜାମାକୁ ଚାହିଁଲା, ସତରେ ସେ ଗୁଡାକ ବଡ ଅସନା ହେଇଛି । ଆଜି ସକାଳେ ମା ତାରି ତାକୁ ଗାଧୋଇ ଜାମା ବଦଳାଇବା ଲାଗି କହିବାରୁ ସେ ତାଙ୍କ କଥା ମାନିଲାନି । ଗୀତାର ଗୋଡ ହାତ, ଜାମାପଟା ସବୁ କି ସଫାସୁତୁରା ! ଟିକିଏ ବୋଲି ମଇଳା କେଉଁଠି ନାହିଁ । ମିନା ନିଜକଥା ଭାବି ଲାଜରେ ଝାଉଁଳି ପଡିଲା ।

ଏ ସମୟରେ ଚହଲ କରି କେତେ ଗୁଡିଏ ସାନ ସାନ ଝିଅ ପୁଅ ସେ ଘର ଭିତରକୁ ପଶି ଆସିଲେ । ସମସ୍ତଙ୍କ ଦେହରେ

ରଙ୍ଗ ବେରଙ୍ଗର ଟିକି ଟିକି ପର । ତାଙ୍କ ଗାଇଁକୁ ପୃଥିବୀର ନୂଆ ଝିଅଟିଏ ଆସି ପହଞ୍ଚିଛି ଶୁଣି ତାକୁ ଦେଖିବାକୁ ସମସ୍ତେ ଦୌଡ଼ି ଆସିଛନ୍ତି । ଖୁସିରେ ଝଲମଲ କରୁଛି ସେମାନଙ୍କର ସୁନ୍ଦର ମୁହଁ ଗୁଡ଼ିକ । ସମସ୍ତେ ସେଇ ଦ'ଜଣଙ୍କୁ ଘେରି ଠିଆ ହେଇଛନ୍ତି ।

ମିନି କିଏ, ତା ନାଁ କଣ, ତା ଘର କୋଉଠି, ସେ କିପରି ଆସିଲା, ସବୁ ପଚାରି ଲାଗିଛନ୍ତି ଗୀତାକୁ । ସେ ସବୁ ଉତ୍ତର ଦେଉଛି । ହଠାତ୍ ସେମାନଙ୍କ ମଝିରୁ କୁନି ଝିଅଟିଏ ବାହାରି ପଡ଼ି କହିଲା, "ମିନି କାହିଁକି ଏତେ ମଇଳା ଜାମା ପିନ୍ଧିଛି ? ତା ଦେହ ହାତ ଏତେ ଅପରିଷ୍କାର କାହିଁକି ? ସେ ମୁଣ୍ଡ କୁଣ୍ଡାଇନି କାହିଁକି ? ତା ଦାନ୍ତ ବି ସଫା ନାହିଁ......ପୃଥିବୀର ଝିଅ ପୁଅଗୁଡ଼ାକ ସମସ୍ତେ କଣ ଇମିତି ଅପରିଷ୍କାର ହୋଇ ରହିଥାନ୍ତି ?"

କୁନି ଝିଅଟିର କଥା ଶୁଣି ମିନି ଏକାବେଳେ ଲାଜରେ ସଢ଼ିଗଲା । ତାର ଗୋରା ମୁହଁଟି ଲାଲ୍ ହୋଇଗଲା । ଗୋଟି ଗୋଟି କରି ସମସ୍ତଙ୍କ ମୁହଁକୁ ଚାହିଁଲା, ଦେଖିଲା—କେହି ତା' ଭଳି ଅପରିଷ୍କାର ହୋଇ ରହିନାହାନ୍ତି । ସମସ୍ତଙ୍କ ଜାମାପଟା ସଫା ସୁତରା । ଗୋଡ଼ ହାତରେ କୋଉଠି ଟିକିଏ ବୋଲି ମଳଧୂଳି ଲାଗିନି । ହସି-ଦେଲାକ୍ଷଣି ନାଲି ଟୁକୁ ଟୁକୁ ଓଠ ମଝିରେ ମୁକ୍ତା ଭଳି ସଫା ଦାନ୍ତଗୁଡ଼ାକ କି ସୁନ୍ଦର ଦିଶୁଛି !

ମୁହଁ ପୋଡ଼ା ମିନି ଠିଆ ହୋଇଥାଏ ! ମନେ ମନେ ନିଜକୁ ଦୋଷ ଦେଉଥାଏ । ଆଜି ସକାଳେ ଯଦି ସେ ତା ମା'ଙ୍କ କଥା ମାନି ମୁଣ୍ଡ ବାନ୍ଧି, ଜାମା ବଦଳେଇ ସଫାସୁତୁରା ହୋଇଥାନ୍ତା, ତା'ହେଲେ ଆଉ ଏତେବେଳକୁ ପରୀ ଗାଇଁର ଝିଅଗୁଡ଼ାକ ତା'ର ଅସନା ଜାମାପଟା ଦେଖି ବଲବଲ ହୋଇ ଚାହିଁ ରହି ନଥାନ୍ତେ !

ଗୀତା ତା ସାଙ୍ଗମାନଙ୍କୁ ବୁଝାଉଥିଲା ଯେ ପୃଥିବୀର ସବୁ ଝିଅ ଏପରି ଅପରିଷ୍କାର ହୋଇ ରହିନଥାନ୍ତି । ସୁନାପୁଅ ଆଉ ସୁନାଝିଅମାନେ ତାଙ୍କ ମା'ଙ୍କ କଥା ମାନି ସଫାସୁ ତୁରା ରହୁଥାନ୍ତି । ତେବେ ମିନାଟା ଟିକିଏ ଅବୁଝା ।

ଯା ହେଉ, ମିନାର ହାତ ଧରି ଗୀତା ତାକୁ ତାଙ୍କ ଅଗଣା ଭିତରକୁ ନେଇଗଲା । କି ସୁନ୍ଦର ଅଗଣା ! ସୁନାର ସବୁ ଗଛପତ୍ର ଝିଲ୍‌ମିଲ୍ କରୁଛି । ତା'ରି ମଝିରେ ଗୋଟିଏ ଧଳା ଧଳା ମଲମଲ ପଥର ଖମ୍ବରୁ ରୂପା ଫୁଲଝରି ପରି ପାଣି ଛୁଆଁଉ ହୋଇ ପଡୁଛି । ଗୁରିପଟେ ପଥରବନ୍ଧା ବନ୍ଧାଯାଇ ପାଣି କୁଣ୍ଡଟିଏ ତିଆରି ହୋଇଛି । ଗୀତା ମନଇଚ୍ଛା ଗାଧୋଇବାକୁ ଲାଗିଲା ! ମିନା ପ୍ରଥମେ ଟିକିଏ ନାରାଜ ହୋଇ ତା'ପରେ ଯାଇ ଗାଧୋଇ ପଡ଼ିଲା । ଗାଧୁଆ ସରିଲା ପରେ ଗୀତା ମା ତାକୁ କି ସୁନ୍ଦର ଜାମାଟିଏ ପିନ୍ଧାଇ ଦେଲେ । ମୁଣ୍ଡ ବାନ୍ଧିଦେଲେ । ମିନା ଯାଇ ଦର୍ପଣ ଆଗରେ ଠିଆ ହେଲା । ଇସ୍, ତାକୁ ସେଇ ମିନା ବୋଲି କେହି ଚିହ୍ନି ପାରିବନି । କେଡେ ସୁନ୍ଦର ସଫା ସୁ ତୁରା ଦିଶୁଛି ସେ । ଦେହ ହାତରେ କେଉଁଠି ଟିକିଏ ବୋଲି ମଇଳା ଲାଗିନି ।

ମିନା ଏଥର ବଡ଼ ଖୁସୀ ହୋଇଗଲା—ଆଉ ପଡ଼ିଶାଇଙ୍କର ଝିଅମାନେ ତାକୁ ଦେଖି ଅସନା ବୋଲି କହି ପାରିବେନି । ନାଲି ଜାମା ଖଣ୍ଡିକ ପିନ୍ଧି ମିନା ସତରେ କି ସୁନ୍ଦର ଦିଶୁଛି । ପିଠିରେ ତା'ର ସେଇ ଦୁଇଟି ରୁପେଲି ରଙ୍ଗର ପର ଲାଗିଛି । ଖାଲି ଚକ୍ ଚକ୍ କରୁଛି । ମନଇଚ୍ଛା ମିନା ପର ଦୁଇଟିକୁ ମେଲାଇ ଦେଇ ପାରୁଛି, ପୁଣି ବନ୍ଦ କରି ଦେଇ ପାରୁଛି ।

ମିନା ଏଥର ଗୀତା ଭଳି ଉଡ଼ି ପାରିବ ସ୍ୱଚ୍ଛନ୍ଦରେ । ତେବେ ପ୍ରଥମେ ପ୍ରଥମେ ଯାହା ଟିକିଏ ଡର ମାଡୁଛି ତାକୁ । ଗୀତା ସାଙ୍ଗରେ ମିଶି ଅଭ୍ୟାସ କରିଦେଲେ ମିନା ମନଇଚ୍ଛା ଉଡ଼ି ପାରିବ । ମିନା ଆଉ ଦିନେ ହେଲେ ଜାମାପଟା ତାର ମଇଳା କରିବନି କି ଧୂଳିରେ ଖେଳି ଗୋଡହାତ ଅସନା କରିବନି । ପକ୍ଷୀ ରାଇଜର ପିଲାମାନଙ୍କ ପରି ସେ ସବୁବେଳେ ସଫାସୁତୁରା ରହିବ । ତା ନ ହେଲେ ସେମାନେ ତା ସାଙ୍ଗରେ ଖେଳିବେନି, ତା ସାଙ୍ଗ ହେବେନି — ଗୀତା କହିଛି ଏ କଥା ।

କେତେ ସୁନ୍ଦର ପିଠା ସବୁ ଆଣି ଖୁଆଇ ଦେଲେ ଗୀତାର ମା, କେତେ ପ୍ରକାର ମିଠା ଫଳ ଆଣିଦେଲେ । ତେବେ ଗୀତା କହିଲା, ସେ ଫଳଗୁଡ଼ାକ ମିନା ରାଇଜର ଫଳ, ଏ ରାଇଜରେ ସେ ସବୁ ଫଳ ମିଳେନି । ଏ ରାଇଜର ଫଳଗୁଡ଼ାକ ଦେଖିବାକୁ ସୁନ୍ଦର ହେଲେ ବି ଖାଇ ତ ହେବନି, ସେଇଥିପାଇଁ ପ୍ରତିଦିନ ପକ୍ଷୀ ରାଇଜରୁ ପକ୍ଷୀମାନେ ମିନାର ରାଇଜକୁ ଯାଇ ଫଳମୂଳ, ବାସନାଫୁଲ ସବୁ ଆଣନ୍ତି ।

ଖାଇ ସାରିଲା ପରେ ଗୀତା ତା'ର ବହି ଧରି ପଢ଼ି ବସିଲା । ମିନା ବଡ଼ ମୁସ୍କିଲରେ ପଡ଼ିଲା । କଣ କରିବ, ତାକୁ ତ ଆଦୌ ପାଠପଢ଼ା ଭଲ ଲାଗେନି, ଏଇଲେ ସେ ପଢ଼ିବ କିମିତି । ବାହାରକୁ ବାହାରିବାକୁ ମନା କରି ଗୀତାର ମା ତାକୁ ବଡ଼ ଆଦରରେ ବହି ଖଣ୍ଡିଏ ଦେଇ ଯାଇଛନ୍ତି । ସତରେ ବଡ଼ ମୁସ୍କିଲରେ ପଡ଼ିଲା ମିନା । ଗୀତାକୁ ଦୁଇ ତିନି ଥର କହିଲା ପାଠ ଛାଡ଼ି ଉଠି ଆସିବାକୁ । ହେଲେ ଗୀତା ଶୁଣିଲାନି, କହିଲା—ମା'ଙ୍କ କଥା ନ ଶୁଣି ବାହାରକୁ ଗଲେ ବିପଦରେ ପଡ଼ିବା ।



"ମୋ ସାଙ୍ଗରେ ଖେଳିବୁ ମିନି······ମତେ ସାଙ୍ଗ କରିବୁ ।"
( ମିନି ଓ ପରୀରାଇଜ, ପୃଷ୍ଠା-ଦୁଇ )

ଗୀତା ଖୁବ୍ ମନ ଦେଇ ପାଠ ପଢୁଥାଏ । ଚୁପ୍ କରି ଉଠି ଆସିଲା ମିନା । ଥଟ୍ଟା କରି ଗୀତାକୁ କହିଲା, "ତମେ ବଡ ପଢୁଆ" – ବାହାରକୁ ଆସି ମିନା ଭାବିଲା, ସେ ନିଜେ ନିଜେ ଠିକଏ ଟହଲି ଗଲିକି ବୁଲି ଆସିବ । ଆଉ ଗୋଟିଏ ସାଙ୍ଗ ମିଳିଲେ ତା ସାଙ୍ଗରେ ଖେଳିବ ।

ମିନା ବୁଲିବାକୁ ବାହାରିଲା । ହେଲେ ଯୋଉ ଘରକୁ ଗଲା, ଦେଖିଲା, ତା'ଭଳି ଝିଅ ପୁଅ ସବୁ ବସି ପାଠ ପଢୁଚନ୍ତି – ଏତେ ମନ ଦେଇ ପଢୁଚନ୍ତି ଯେ, ତାକୁ ଦେଖି ପଦେ ସୁଦ୍ଧା କଥା କେହି କହିଲେନି । ଏମିତି କି ମୁହଁ ଉଠେଇ ଥରେ ହେଲେ କେହି ଚାହିଁଲେନି ।

ମିନା ଭାରି ରାଗିଗଲା – ଇସ୍, ଏ ପିଲାଗୁଡ଼ାଙ୍କର ଭାରି ସାହସ ତ ! ଦେଖିଲେ ପଦେ କଥା କହୁନାହାନ୍ତି । ହଉ, କେହି ଖେଳିବାକୁ ନ ଆସନ୍ତୁ, ମିନା ନିଜେ ନିଜେ ଏକୁଟିଆ ଖେଳିବ ।

ଇମିତି ବୁଲୁ ବୁଲୁ ହଠାତ୍ ଆଉ ବାଟ ପାଇଲାନି ମିନା । ଇସ୍, ଏବେ ସେ ଗୀତା ଘରକୁ ଯିବ କିମିତି ? ଗୋଟିଏ ବଡ ବଗିଚା ଭିତରେ ମିନା ଏକୁଟିଆ ଠିଆ ହୋଇଛି, କେହି କୁଆଡେ ନାହାନ୍ତି । ମିନା ଯେଉଁଆଡେ ଗଲେ ବି ସେଇ ଏକା ଜାଗାରେ ଆସି ପହଞ୍ଚି ଯାଉଛି । ଚାଲି ଚାଲି ପାଦ ଯୋଡିକ ଦରଜ ହୋଇଗଲାଣି । ପର ଦୁଇଟି ମେଲଇ ଉଡିବାକୁ ଚେଷ୍ଟା କଲେ ବି ଉଡିପାରୁନି । ବେଳକୁ ବେଳ ଆଲୁଅ କମିଯାଇ ଅନ୍ଧାର ହୋଇ ଆସୁଚି – ଏଇକ୍ଷଣି ସନ୍ଧ୍ୟା ହୋଇଯିବ । ମିନା ଏକୁଟିଆ ଏ ନିଘୁଞ୍ଚିଆ ବଗିଚାରେ କିମିତି ରାତିଟା କଟେଇବ ? ପବନ ଖାଲି ସୁ ସୁ ହୋଇ ବହୁଛି । ଗଛପତ୍ର ଗୁଡାକ ହଲୁଚି ଖୁବ୍ ଜୋରରେ ଏଇଲେ ବୋଧହୁଏ ଝଡ଼ମାଡ଼ ଆସିବ

ସେତେବେଳେ ଯାଇ ମା'ଙ୍କ କଥା ମନେ ପଡ଼ିଲା ମିନାର । କାହିଁକି ସେ ତାର ମା'ଙ୍କୁ ଛାଡ଼ି ଏ ପରାଘରକୁ ଆସିଲା । ମା ଏଇଲେ କୁନାକୁ ଖୁଆଇ ଦେଉଥିବେ । ଆଉ ଟିକିଏ ଗଲେ ପାଖରେ ଶୁଆଇ ଗପ କହିବେ । ନିତି ରାତି ମା'ଙ୍କଠୁ ଗପ ଶୁଣି ଶୁଣି ସେ ଆଉ ଭଉଣୀ ଦୁହେଁ ଶୋଇ ପଡ଼ନ୍ତି । କେତେ ଆଦର କରି ମା ତାକୁ ଖୁଆଇ ଦିଅନ୍ତି । ଶୋଇଲା ବେଳେ କେମିତି ଆଉଁସି ଦେଉଥାନ୍ତି । ସବୁ ଗୋଟି ଗୋଟି ହୋଇ ଘରକଥା ମିନାର ମନେ ପଡ଼ିଲା । ସେ ଏ ଘରକୁ କାହିଁକି ଆସିଲା, ଏ ଅଜଣା, ଅଶୁଣା ଘର—ଏଇଲେ କିଏ ନେଇ ତାକୁ ଛାଡ଼ିବ ତା ମା'ଙ୍କ ପାଖରେ ? ସେ ଯିବ କିମିତି ?

କୋଉଠି ରହିଲା ଗୀତାର ଘର ? ଗୀତାର ମା, ତାକୁ ବାହାରକୁ ବାହାରିବାକୁ ମନା କରିଥିଲେ, ସେ ତାଙ୍କ କଥା ନ ମାନି ବାହାରିଲା କାହିଁକି ? ଏଇଲେ କଣ କରିବ ମିନା ? ଅନ୍ଧାର ହୋଇ ଆସୁଛି······ଗୋଟିଏ ଗଛମୂଳେ ବସିପଡି ମିନା ତ କାନ୍ଦିବାକୁ ଆରମ୍ଭ କରିଦେଲା । ଘରକଥା ମନେ ପଡ଼ି ଆଖିରୁ ତାର ଝର ଝର ହୋଇ ଲୁହ ବୋହିଗଲା । ଟିକି ନଖି ସବୁ କଥାଯାକ ତାର ମନେ ପଡ଼ିଲା କୁନା ପାଇଁ କିମିତି କିମିତି ଲାଗିଲା ମନଟା । ଇସ୍, କୁନାଟା ଏତେବେଳକୁ 'ନାନୀ କୁଆଡ଼େ ଗଲା' ବୋଲି କାନ୍ଦୁଥିବ । ତାକୁ କେତେ ଖୋଜୁଥିବ । ଆଜି କାହା ସାଙ୍ଗରେ ସେ ଖେଳୁଥିବ··· ମିନା ତାକୁ କାହିଁକି ଛାଡ଼ି ଚାଲି ଆସିଲା···ଏବେ ଆଉଥରେ ସେ ଯିବ କିମିତି ? କାହିଁକି ଏତେ ଦୂରକୁ ସେ ଚାଲି ଆସିଲା ଯେ······?

ସବୁ କଥା ମନେ ପକାଇ ମିନା ବସି କାନ୍ଦୁଛି । ଆଖି ଲୁହରେ ଜାମା ଓଦା ହେଇଗଲାଣି । ଏଣେ ଡର ବ ମାଡ଼ିଲାଣି ।

ଆଉ ଟିକିଏ ଗଲେ ଏକାବେଳେ ଅନ୍ଧାର ହୋଇଯିବ ।

"କଲେ ଝିଅ, କାହିଁକି କାନ୍ଦୁଛୁ ଇମିତି ?" କିଏ ଜଣେ କହିଲା । ମିନା ଲୁହ ପୋଛି ମୁହଁ ଟେକିଲା, ଦେଖିଲା—ଆଗରେ ଗୋଟିଏ ବୁଢ଼ୀ ଠିଆ ହୋଇଛି । ଅଣ୍ଟା ନଇଁ ଗଲାଣି, ମୁଣ୍ଡର ବାଳଗୁଡ଼ାକ ରୂପାସୂତା ଭଳି ସରୁ ସରୁ, ଧଳା ଧଳା । ହାତରେ ବାଡ଼ି ଖଣ୍ଡେ ଧରିଛି । ବୁଢ଼ୀ ଆଉ ଥରେ ପଚାରିଲା, 'କଲେ ଝିଅ, କାହିଁକି କାନ୍ଦୁଛୁ ?"

ମିନାକୁ ପ୍ରଥମେ ଟିକିଏ ଡର ମାଡ଼ିଲା, ହେଲେ ସାହସ କରି କହିଲା,"ମାଉସୀ, ବାଟ ହଜିଗଲି, ମୁଁ ଆଉ ଘରକୁ ଯାଇପାରିବିନି । ମୋ ମା, ମୋ ସାନଭାଇ କେତେଣେ ବ୍ୟସ୍ତ ହୋଇ ମତେ ଖୋଜୁଥିବେ ।" କହୁ କହୁ ମିନା କହିଁ କହିଁ ହୋଇ କାନ୍ଦିଲା ।

ବୁଢ଼ୀ ଆଉ ଟିକିଏ ନଇଁପଡ଼ି ନିଜ ଲୁଗାକାନିରେ ପୋଛି ଦେଲା ମିନାର ଲୁହ, "ଏତେ ବେସ୍ତ ହ'ନାଲେ ଝିଅ, କହିଲୁ ତୋ ଗାଇଁର ନାଁ କଣ···ଯଦି ହବ ତ ମୁଁ ନେଇ ଛାଡ଼ି ଆସିବି ।"

ଆଗ୍ରହରେ ମିନା ବୁଢ଼ୀର କାନିକୁ ସାଉଁଟି ଧରି କହିଲା, "ମାଉସୀ, ସତରେ ତମେ ମତେ ନେଇଯିବ······ନେଇ ପାରିବ ? ମୋ ଗାଇଁର ନାଁ ପରୀ ପୃଥିବୀ ।"

ବୁଢ଼ୀ ଆଶ୍ଚର୍ଯ୍ୟ ହୋଇଯାଇ କହିଲା, "ତୁ ପୃଥିବୀର ଝିଅ ? ଏଠାକୁ ଆସିଲୁ କିମିତି ?"

ମିନା ସେଇଠୁ ବୁଢ଼ୀକୁ ତା ନିଜ କାହାଣୀ ଶୁଣାଇଲା । ପରୀରାଇଜ କଥା କହିଲା, ଗୀତା କଥା କହିଲା । ବୁଢ଼ୀ ସବୁ ଶୁଣି କହିଲା, "ସେଇଥି ! କହ, ମୁଁ ତ ଭାବୁଛି ଇମିତି ନୂଆ ଝିଅଟେ

କୁଆଡୁ ଆସିଲ ? ତୁ କାହିଁକି ଗୀତା ମା'ଙ୍କ କଥା ନ ମାନି ବାହା-ରକୁ ଏକୁଟିଆ ବାହାରିଲୁ ? ଅମାନିଆ ଝିଅ ପୁଅ ଏଠି ରହନ୍ତି ନାହିଁ । ଏଇଲେ ମୁଁ ଯଦି ଆସି ନଥାନ୍ତି ତୋ ଅବସ୍ଥା କଣ ହୋଇ ଥାଆନ୍ତା···ଛିଃ···ଛିଃ, ତୁ ଏତେ ଅମାନିଆ ଝିଅଟେ···।"

ମିନି କାନ୍ଦ ପକାଇ କହିଲା, "ମାଉସୀ, ମୁଁ ଆଉ କେବେ ଅମାନିଆ ହେବିନି । ମା'ଙ୍କ କଥା, ବଡ଼ମାନଙ୍କ କଥା ଶୁଣିବି । ତମେ ମତେ ନେଇ ମୋ ମା'ଙ୍କ ପାଖରେ ଛାଡ଼ିଦିଅ ।"

ବୁଢ଼ୀ କହିଲା,"ହଉ,ତାହେଲେ ଆଖି ବନ୍ଦ କର୍ ଟିକିଏ।" ମିନି ଆଖି ବନ୍ଦ କଲା । ବୁଢ଼ୀ ସେଇଠୁ କଣ ଟିକିଏ ମନ୍ତ୍ର ବୋଲି ଦେଲା । ତା'ପରେ କଣ ହେଲା ମିନି ଆଉ ଜାଣିନାହିଁ ।

ଆଖି ଖୋଲିଲା ବେଳକୁ ଦେଖିଲା, ମା ତା ଦେହରେ ହାତ ଦେଇ ତାକୁ ଉଠାଉଛନ୍ତି । ତରବର ହୋଇ ମିନି ଉଠି ବସିଲା । ଦେଖିଲା, ତାଙ୍କ ବଗିଚାର ସେଇ ଗଛମୂଳେ ସେ ବସିଛି ।

"ମିନି, ତତେ ଖୋଜି ଖୋଜି ମୁଁ ହଇରାଣ ହୋଇ ଗଲିଣି । ତୁ ଆସି ଏ ଗଛ ମୂଳଟାରେ ଶୋଇଛୁ ?" ମା କହିଲେ ।

ମିନି ଆଶ୍ଚର୍ଯ୍ୟ ହୋଇ ତା ଜାମା ଆଡ଼କୁ ଚାହିଁଲା । ଦେଖିଲା, ସେଇ ଏକା ମଇଳା ଜାମା ଖଣ୍ଡିକ ସେ ପିନ୍ଧିଛି । ମୁହଁ ବୁଲେଇ ଚାହିଁଲା ବେଳକୁ ପରୀ ଯୋଡ଼ିକ ବି ନାହାଁନ୍ତି ।

"ମା ମ, ମୋର ନୀଳ ଜାମା ଖଣ୍ଡିକ କୁଆଡେ଼ ଗଲା ? ଗୀତା ମା ମତେ ପିନ୍ଧେଇ ଦେଇଥିଲେ··· କେତେ ସୁନ୍ଦର ଜାମାଟା···" ମିନି କହିଲା ।

ମା ଅବାକ୍ ହୋଇ କହିଲେ,"ମିନି କଣ ସବୁ କହୁଛୁ ମ ?"

ମିନି କହିଲା, "ମା ମ, ପକ୍ଷୀ ରାଇଜରୁ ଲୁନି ଝିଅଟେ ଆସି ମତେ ଡାକି ନେଇଥିଲା ପରା..." ଧୀରେ ଧୀରେ ମିନି ମା'ଙ୍କୁ ସବୁ କଥା କହିଲା ।

ମିନିର ମୁଣ୍ଡଟିକୁ ଆଉଁସି ଦେଇ ମା ହସି ହସି କହିଲେ, "ଏଥର ସୁନାଝିଅ ହେବୁ ମିନି, ପାଠ ପଢ଼ିବୁ, ସଫାସୁତୁରା ରହିବୁ । ତା'ହେଲେ ପକ୍ଷୀ ରାଇଜର ସେଇ ଝିଅଟି ତୋ ସାଙ୍ଗ ହବ । ତତେ ଆଉ ଥରେ ଡାକିନବ । ପକ୍ଷୀ ରାଇଜରେ ସେମାନେ ଆଦୌ ଅମାନିଆ ଦୁଷ୍ଟ ପିଲାଙ୍କୁ ରଖନ୍ତି ନାହିଁ । ସୁନାଝିଅ ହେଲେ ପକ୍ଷୀ-ମାନେ ନିତି ଆସି ତୋ ସାଙ୍ଗେ ଖେଳିବେ ।"

ମା'ଙ୍କ କୋଳରେ ବସି, ତାଙ୍କ କାନ୍ଧରେ ମୁହଁ ଲୁଚାଇ ମିନି କହିଲା, "ମା, ଆଜିଠୁ ମୁଁ ସୁନାଝିଅ ହେବି – ତମ କଥାର ଅବାଧ ହେବିନି କେବେ ।"



# ପୁଷି ଓ ଟମିର ପିଠା ଖିଆ

ବୁଲୁର ଏତେ ରାଗ ହେଲା ଯେ କହିଲେ ନ ସରେ । ଇସ୍, ଏତେ ସୁନ୍ଦର ପିଠାଗୁଡ଼ାକ ବୋଉ ତିଆରି କରି ରଖିଥିଲେ । କେତେ ବଡ଼ ବଡ଼ ଆଉ କେତେ ସୁଆଦ ପିଠାଗୁଡ଼ାକ ! ବୋଉ ତିଆରି କଲାବେଳେ ବୁଲୁ ଯାହା ଗୋଟିଏ ଖାଇଛି, ବାକି ସବୁ ପୁଷି ଆଉ ଟମି, ଦି'ଜଣଯାକ ସାଙ୍ଗ ହୋଇ ଖାଇ ଦେଇଛନ୍ତି ! ସ - ବୁ - ତ - କ ! ଗୋଟିଏ ବୋଇଲେ ଗୋଟିଏ ବାକି ନାହିଁ । ବୋଉ ତ ପିଠାକୁ ଆଲମାରି ଭିତରେ ରଖି ଦେବାକୁ ଯାଉଥିଲେ । ଏ ସମୟରେ ବାଡ଼ିଆଡୁ ରମାଠା ଡାକ ପକାଇଲା କଣ ପାଇଁ । ଏକ-ବାରେ ଅତିଛି ଡାକ । ବୋଉ ଥାଳିଟା ଟେବୁଲ ଉପରେ ରଖି ଦେଇ ଗଲେ । ବୁଲୁକୁ କହିଗଲେ ଟିକିଏ ଜଗିବା ପାଇଁ । ଏତିକି ବେଳକୁ କାହିଁକି ଯେ ସେ ଉଡ଼ାଜାହାଜଟା ଆସିଲା ...... ଉଡ଼ା-ଜାହାଜ ଉଡ଼ିବା ଶବ୍ଦ ଶୁଣି ବୁଲୁର ତ ଆଉ କିଛି ମନେ ପଡ଼ି-ଲାନି । ଦାଣ୍ଡପଟକୁ ଦଉଡ଼ିଗଲା ସେ ।

କୁଆଡେ ଥିଲେ ପୁଷି ଆଉ ଝମି···କମିତ ଚୁପ୍ କନା ଆସି ଜୁଟିଗଲେ ପିଠାଥାଳୀ ପାଖରେ । ବୁଲୁ ତ ଉଡାଜାହାଜକୁ ଚାହିଁଛି । ଉଡାଜାହାଜଟା ବାନ୍ଧି ବୁଲୁଛି ଉପରେ । ବୁଲୁ ଆଉ କମିତ ଆସୁଛି ସେଇଠୁ ?

ଏଣେ ସମା ଆଉ ବେହେରା କଣ କଳ ଲଗେଇଛନ୍ତି ଯେ ବୋଉ ସେଇଠି ଠିଆ ହୋଇ ସେମାନଙ୍କର କଳ ଭୁଝାଉଛନ୍ତି ।

କେତେବେଳ ପରେ ବୋଉ ବାଡପଟୁ ଓ ବୁଲୁ ଦାଣ୍ଡପଟୁ ଆସି ଏକା ସମୟରେ ହାଜର ହେଲେ ସେ ଘରେ—ଟେବୁଲ୍ ଉପରେ ପିଠାଥାଳୀ, ଏପଟେ ପୁଷି ଓ ସେପଟେ ଝମି ! ସେତେବେଳକୁ ଯାହେଁ ଶେଷ ପିଠାଟିମାନ ଖାଉଛନ୍ତି ! ଦେଖି ଦେଇ ବୋଉ ଚଟିଛି, ବୁଲୁ ଚଟିଛି । ବୋଉ ଚାହୁଁଛନ୍ତି ବୁଲୁକୁ, ବୁଲୁ ଚାହୁଁଛି ଝମି ଓ ପୁଷିକୁ, ଆଉ ଖଣ୍ଡିଏ ବୋଲି ପିଠା ନାହିଁ ଥାଳୀରେ ।

ବୋଉ ଘର ବେସ୍ତ ହେଲେ ଖରାବେଳଯାକ ଚୁଲି ପାଖରେ ବସି ଏତକ ପିଠା କରିଥିଲେ, କଣ ନା ଶେଷକୁ ପୁଷି ଆଉ ଝମି ଖାଇଲେ ସବୁତକ ।

ଦୁମ୍ ଦୁମ୍ କରିଯାଇ ବୁଲୁ କଣ କଲା ନା, ପୁଷି ଆଉ ଝମି ଦୁହିଁଙ୍କର କାନ ଆଚ୍ଛାକରି ମୋଡିଦେଲା । ଏତେ ଦୁଷ୍ଟ ଏ ଦୁଇଟା ! ଯାଙ୍କୁ ଆଉ ଘରେ ରଖିବନି ବୁଲୁ, ରାଗରେ କହିଲା,"ଯା ବାହାର୍, ବାହାର୍, ଏମିତ କୁକୁର ବଗଡ଼ କିଏ ଘରେ ପୋଷି ରଖିବ ମ ?"

ଝେମି ଓ ପୁଷି ବାହାରକୁ ଗୃଲିଆସିଲେ, ଡେଉଲେ ଦଶଣ-ମାନଙ୍କୁ ଭରି ରାଗ ଲଗିଗଲା । ବୁଲୁ ବାବୁ କଣ ନା, ତାଙ୍କ ଦାନ୍ତିଙ୍କୁ କହିଲେ ଦଉ୍ରୁ ବାହାରଯିବାକୁ ! ପୁଷି ମିଆଁଉଁ ମିଆଁଉଁ ହୋଇ କହିଲା, "ଗୃଲ୍ ମ ଝେମି, ଆମେ ଏଠାରୁ ପଳେଇବା । ଆମକୁ କଣ କୋଉଠି ଯାଗା ମିଳିବନି ?"

ଝେମି ଭଉ ଭଉ ହୋଇ କହିଲା, "ସତରେ ପଳେଇବା । ବୁଲୁ ବାବୁ କଣ ନା ଆମ କାନ ମୋଡ଼ିବେ !"

ଯୁ।ଭ କୁହାକୁହି ହୋଇ ଦୁହେଁଯାକ ଚୁପ୍ ଚୁପ୍ ଫାଟକ ଦେଇ ବାହାରିଗଲେ ।

ଦହେଁ ତ ଯାଉଛନ୍ତି ଏକମୁହାଁ ହୋଇ । ବାଟରେ ଗୋଟିଏ ଗ୍ଲେଣ୍ଡିଆ ନାଳ ପଡ଼ିଲା । ପୁଷିକୁ ବଡ଼ ମୁସ୍କିଲ୍ ହେଲା । ସେ ଯିବ କିମିତ ? ଝେମି କହିଲା, "କିଛି ଭାବନା ନାହିଁ ମ, ମୋ ପିଠି ଉପରେ ବସିପଡ଼ କି ମୁଁ ତତେ ନେଇଯିବ ।"

ପୁଷି ଖୁସି ହୋଇଯାଇ ଝେମି ପିଠିରେ ବସିଲା । ଝେମିକୁ ତ ଭରି ଭଲ ପହଁରି ଜଣା । ବୁଲୁ ବାବୁ ତାକୁ ଶିଖେଇଛନ୍ତି । ସେ ପହଁରିବାକୁ ଲଗିଲା । ତା ପିଠି ଉପରେ ମଜାରେ ବସିଥାଏ ପୁଷି ।

କିନ୍ତୁ ଅଳପବାଟ ଯାଇଛନ୍ତି କି ନାହିଁ ପୁଷି ଦେଖିଲା,—ଇଲେ ବୋଉଲେ । ଏତେବଡ଼ କୁମ୍ଭୀରଟେ ପାଟି ଆଁ କରି ତାଙ୍କର ଆଡ଼କୁ ଧାଇଁ ଆସୁଛି । ପୁଷି ତ ଡରେ ଥରିଲା । ଏତେ ଜୋରରେ ଥରିଲା ଯେ ସିମିତ ପାଣିରେ ପଡ଼ିଯିବ । ଝେମିର ତ ଅକଲ ଗୁଡୁମ୍ । ଏବେ ସେ କରେ କଣ ? ଏତେ ଚଞ୍ଚଳ କୁମ୍ଭୀରଟା ପହଁରି ଆସୁଛି !



"ଏତରେ ପଳେଇବା । ବୁଲୁବାବୁ କଣ ନା
ଆମ କାନ ମୋଡ଼ିବେ !"
( ପୁଷି ଓ ଟମିର ପିଠାଖିଆ, ପୃଷ୍ଠା ଷୋହଳ

ଯାହାହେଉ, ଝେମିଝାର ଟିକେ ଦମ୍ଭ ଅଛି । ସ୍ଥିରହୋଇ ବସିବାକୁ ପୁଷିଙ୍କୁ ଗୋଟାଏ ଧମକ ଦେଇ ପ୍ରାଣପଣେ ପହଁରିଲା ଝେମି । ପୁଷି ଡରମରି ବସିଛି । ଉପରୁରେ ତା'ର ମିଟିମିଟି ଆଖି ଦୁଇଟି ବୁଜି ଦେଇଛି । କୁମ୍ଭୀର ଏଣେ ଚଞ୍ଚଳ ସେ ଦୁହିଁଙ୍କୁ ଧରିବାକୁ ଚେଷ୍ଟା କରୁଛି । ପିଠି ଉପରେ ଏ ପୁଷିଟା ବସି ନ ଥିଲେ ଝେମି ଏତେବେଳକୁ ବୁଡ଼ା ପହଁରି ମାରି ଯାଇଥାନ୍ତାଣି ।

ଥରକାନା ଗୃହିଁଲା ପୁଷି... ଇଲେ ବୋଉଲେ, ଆଉ ହାତେ ଅଛି ... ହେଇ, ଏଇଲେ ତ କୁମ୍ଭୀର ଝାଙ୍କୁକାନା ସେ ଦୁଜଣଙ୍କୁ ଗିଳି ପକେଇବ...କେତେ କେତେ ମୂନିଆଁ ଦାନ୍ତ ଗୁଡ଼ାକ ତାର । ଭୟରେ ପୁଷି କାନ୍ଦି ପକାଇଲା । କାହିଁକି ସେ ଘର ଛାଡ଼ି, ବୁଲୁବାବୁଙ୍କୁ ଛାଡ଼ି ଆସିଲା ? ସବୁ ଦୋଷ ଏ ଝେମିର । ପିଠା ଖାଇବାକୁ ଝେମିତ ଆଗ ଡାକିଲା ତାକୁ, ନ ହେଲେ ସେ କଣ ଏତେ ଦୁଷ୍ଟାମି କରିଥାନ୍ତା ? କେବେ ନାଇଁ । ରାଗରେ ଦୁଃଖରେ ପୁଷି ତୁଣ୍ଡରୁ ବାହାରି ପଡ଼ିଲା, "ଝେମିରେ, ତୋର ଲାଗି ଏ କାଣ୍ଡ, ନହେଲେ ମୁଁ ବୁଲୁବାବୁଙ୍କ ଘୁଡ଼ି ଆସନ୍ତି ନା ଆଜି ଏ ମଝି ନଈରେ କୁମ୍ଭୀର ପାଟିରେ ପଡ଼ନ୍ତି ! ଆହା, କି ସୁଖରେ ସେଇଠି ମାଛଭାତ ଖାଇ ରହିଥିଲି, ଶେଷକୁ ମୋ କପାଳରେ ଥିଲା କୁମ୍ଭୀର ହାତରେ ମରିବାକୁ.. "ପୁଷି ସକ ସକ ହୋଇ କାନ୍ଦିଲା । ତାର ଆଖିଲୁହରେ ଝେମିଟାର ପିଠି ଏକାବେଳେ ଓଦା ହୋଇଗଲା । ଝେମି ତ ରାଗରେ ଖାଲି ଦାନ୍ତ କଡ଼ମଡ଼ କରୁଥାଏ । ଯଦି ସୁବିଧା ଥାଆନ୍ତା, ତେବେ ଏ ପୁଷିଟାକୁ ଦି ଗୃପୁଡ଼ା ଏଇଠି ପକାଇଥାନ୍ତା ଝେମି । କିନ୍ତୁ ପୁଷି ତ ରଜା ଭଳି ତା ପିଠି ଉପରେ ବସିଛି, ଏଣେ କୁମ୍ଭୀରଟା ଗୋଡ଼ାଉଛି ଖାଇବ ବୋଲି । ଏତକ ବେଳେ ରାଗିବା ଠିକ୍ ହେବନି ।

ଝେମି ଜୋରରେ ପହଁରିବାକୁ ଲଗିଲ । ଯାହାହେଉ, ଶେଷକୁ ଝେମି ଯାଇ ପହଞ୍ଚିଲ କୂଳରେ । ଆଉ ଟିକିଏ ଡେରି ହୋଇଥିଲେ କୁମ୍ଭୀର ତାଙ୍କୁ ରସଗୋଲ୍ଲା ଭଳି ଗିଳି ପକାଇ ଥାଆନ୍ତା । ମାଟି ଉପରକୁ ଡେଇଁପଡ଼ି ଏଥର ଦୁହେଁଯାକ ଏକା ନିଃଶ୍ୱାସରେ ଦଉଡ଼ିଲେ । ଏମିତି ଅନେକ ବାଟ ଗୁଲିଗଲେ । ଶେଷକୁ ଧଇଁ ସଇଁ ହୋଇ ବସିପଡ଼ିଲେ ଗୋଟାଏ ଗଛମୂଳରେ ।

ଭୋକରେ ଶୋଷରେ ପାଟି ଅଠା ଅଠା ହୋଇଗଲଣି । କେଉଁଠି କିଛି ଖାଇବାକୁ ନାହିଁ, ପାଦ ଆଉ ଚଳୁନି, କମିତି କଣ କରାଯିବ ? ପୁଷି ପୁଣି କାନ୍ଦ ଆରମ୍ଭ କଲା, "ଝେମିରେ, ତୋର ଲାଗି ଏ କାଣ୍ଡ, ନହେଲେ ମୁଁ ବୁଲୁବାବୁଙ୍କୁ ଛାଡ଼ି ଆସନ୍ତି ନା ଆଜି ଭୋକରେ ଛଟପଟ ହୋଇ ମରନ୍ତି ! ଏତେବେଳକୁ ଘରେ ଥିଲେ ବୁଲୁବାବୁ କେତେ ଚିଜ ଖାଇବାକୁ ଦେଇଥାଆନ୍ତେ···କେତେ ବିସ୍କୁଟ···କେତେ ପାଉଁରୁଟି···। "

ପୁଷିର କାନ୍ଦଣା ଦେଖି ଝେମିର ଇଚ୍ଛା ହେଲା, ଆଚ୍ଛା କରି ତାର କାନ ମୋଡ଼ି ଦିଅନ୍ତା ! ହେଲେ ପୁଷି ବେଶି କାନ୍ଦିବ—ଥାଉ, ପିଲାଟା ଯେତେ ହେଲେ । ଯ୍ୟା ବଗୁରି ଝେମି କାନ ମୋଡ଼ିଲା ନା ସିନା ଧମକେଇ କହିଲା, "ଦେଖ୍ ପୁଷି, ଆଉ ଥରେ ଯଦି ଇମିତି କଥା ମତେ କହିବୁ, ତାହେଲେ ଏକୁଟିଆ ତତେ ଏଠି ଛାଡ଼ିଦେଇ ମୁଁ ଯୁଆଡ଼େ ହେଲେ ପଳାଇବି ।"

ପୁଷିର ହାଲୁକ ଶୁଖିଗଲା । ଇଲେ ମା, ଏ ନିଛାଟିଆ ଜଙ୍ଗଲରେ କିଏ ଏକୁଟିଆ ରହିବ ? ପଛେ ସେ ଆଉ ଝେମି ନାଁରେ ପାଟି ଫିଟାଇବନି ସିନା······ ।

ଅନ୍ଧାର ହୋଇ ଆସିଲା । ଜଙ୍ଗଲିଆ ଜାଗା । ଉପରେ ଦୁହେଁ ଦୁହିଁଙ୍କୁ ଜାବୁଡ଼ି ଧରି ବସିଛନ୍ତି । ଏତିକିବେଳକୁ କୋଉଠୁ ଗୋଟିଏ ଗଧିଆ ରଡ଼ି ଶୁଭିଲା । ସେ ଭୟଙ୍କର ରଡ଼ି ଶୁଣି ପୁଷି ଓ ଟେମି ଗୁନିଆ ହୋଇଗଲେ । ପୁଷି ତ ନାକକାନ୍ଦୁରି, ସାଙ୍ଗେ ସାଙ୍ଗେ ଗୁନିଆରେ କାନ୍ଦି ପକାଇଲା । ଆଗକଥା ଭୁଲିଯାଇ କହି ପକାଇଲା, "ଟେମିରେ,ତୋର ଲାଗି······।" ଏତିକି କହୁଛି, ତା କାନପାଖରେ ଫୁସ୍ ଫୁସ୍ ହୋଇ ଟେମି କହିଲା, "ଦେଖ୍ ପୁଷି, ତୁ କହୁଛୁ କି ମୁଁ ଯାଉଛି । ତୋତେ ଗଧିଆ ଖାଉ···।"

ଭୟରେ ପୁଷି ଡିଭି କାମୁଡ଼ି ପକାଇଲା ମିଛରେ, "ନାଇଁରେ ଟେମି, ତୋର କିଛି ଦୋଷ ନାଇଁ, ମୋର ତ ସବୁ ଦୋଷ । ମୁଁ ସିନା ତତେ ଆଗ ଘର ଛୁଡ଼ି ପଳେଇବା କଥା କହିଲି···" ସୁଁଉ ସୁଁଉ ହେଇ କହିଲା ପୁଷି । ଏଥର ଟେମିର ମନଟା ଖୁସି ହୋଇଗଲା ପୁଷିର କଥା ଶୁଣି ।

କ'ଣ କହିବାକୁ ଯାଉଛି, ଟେମି ଦେଖିଲା—ତାଙ୍କଠୁ ମୋଟେ ଗୁରିହାତ ଦୂରରେ ଜୁଳୁ ଜୁଳୁ ହୋଇ ଦିଟା ଆଖି ଦିଶୁଛି । ଏ ନିଶ୍ଚୟ ସେ ଗଧିଆଟା । ସେମାନଙ୍କ ଗନ୍ଧ ବାରି ସେ ଆସି ହାଜର ହୋଇଗଲାଣି । ଟେମି ସାଙ୍ଗେ ସାଙ୍ଗେ ଡ଼ାକ ପକାଇଲା, "ହେଇ ପୁଷି, ଦେଖୁଛୁ କଣ ? ଗୁଲ୍ ଦୌଡ଼···।"

ପୁଷି ତରକିଯାଇ ପ୍ରାଣପଣେ ଦଉଡ଼ିଲା, ଟେମି ବି ଦଉଡ଼ିଲା ତା ସଙ୍ଗେ । କିଛି ବାଟ ଯାଇ ପଛକୁ ଗୁହିଁଲା ଟେମି, ହେ ଭଗବାନ୍ ! ଗଧିଆଟା ବି କୁଦା ମାରି ମାରି ଆସୁଛି । ଗଧିଆଠାରୁ ଆଉ କଣ ସେ ଦୁହେଁ ରକ୍ଷା ପାଇବେ ? ଏ ଜଙ୍ଗଲ ଭିତରେ ଦୌଡ଼ୁ ଦୌଡ଼ୁ ଗଧିଆଠାରୁ ରକ୍ଷା ପାଇଲେ ବି ବାଘ ହାବୁଡ଼ରେ ପଡ଼ିବେ ନିଶ୍ଚୟ ।

କାହିଁକି ଯେ ଆଜି ଦ'ଘଣ୍ଟାଯାକ ମୂର୍ଖାମି କଲେ ? ଖାଲି କାନମୋଡ଼ା କାହିଁକି, ବୁଲୁବାବୁ ଦଶ ଚୁପଡ଼ା ଦେଇଥିଲେ ବି ସହିଯାଇ ରହିବାଠା ଭଲ ହୋଇଥାଆନ୍ତା । ଏବେ ଅକାରଣରେ ଜୀବନ ଯିବ ସିନା ଆଉ ଲାଭ କଣ ହେବ !

ଠମି ଦଉଡ଼ୁଥିଲା ପ୍ରାଣପଣେ, ହେଲେ ତାର ମନେ ପଡ଼ୁଥିଲା ବୁଲୁବାବୁଙ୍କ କଥା । ଘରେ ଥିଲେ ଏତେବେଳକୁ ବୁଲୁବାବୁ ତା ସାଙ୍ଗରେ ଖେଳୁଥାନ୍ତେ । କେତେ ପ୍ରକାର ଖେଳ ଯେ ସେ ଶିଖେଇଛନ୍ତି, କେତେ ଆଦରରେ ବୁଲୁବାବୁ ଠମିର ମୁଣ୍ଡ ପିଠି ଆଉଁସି ଦିଅନ୍ତି, କେତେ କଥା ଦିଅନ୍ତି ଖାଇବାକୁ, ଆହା — ସେ ସୁଖ ଛାଡ଼ି ଠମି ଘରୁ ବାହାରିଲା କାହିଁକି ! ତାର ରାଗଟା ଯାଇ ପଡ଼ିଲା ପୁଷି ଉପରେ । ପୁଷି ତ ଆଗ ଘର ଛାଡ଼ି ଚାଲିଯିବା କଥା କହିଲା, ନ ହେଲେ ସେ କଣ ଆସିଥାନ୍ତା ? ଏଇ ବୋକୀ ପୁଷିର ମୋଟା-ବୁଦ୍ଧିରେ ପଡ଼ି ଏଇଲେ ଗଧିଆ ହାତରେ ପ୍ରାଣ ଯିବ ସିନା ! କାହିଁକି ସେ ଦୋଷ କାମ କଲା, କେତେ କଷ୍ଟରେ ବୁଲୁବାବୁଙ୍କ ବୋଉ ପିଠାତକ କରିଥିଲେ, ଚୋରଙ୍କ ପରି ଲୁଚି ଲୁଚି କାହିଁକି ଖାଇଲା ସେ ? ନିଜ ପାପରୁ ଏଇଲେ ଏ ଦଶା ଭୋଗିବ ।

ପୁଷି ପ୍ରାଣଡରରେ ଦୌଡ଼ୁଥିଲା ବୋଲି ଦେଖି ପାରିଲାନି, ନହେଲେ ସେତେବେଳକୁ ଠମିର ଆଖିରୁ ବି ଲୁହ ଝରୁଥିଲା ଅନବରତ । ବାଟ ଅବାଟ ନ ମାନି ସେମାନେ ଚାଲିଛନ୍ତି ! କଅଁଳିଆ ପାଦଗୁଡ଼ାକରେ କଣ୍ଟା, ଖୁଣ୍ଟା ଗଳି ରକ୍ତ ବାହାରିଲାଣି — ଟିକିଏ ହେଲେ ଅଟକିଯିବାର ଉପାୟ ନାହିଁ । ପଛରେ ଗଧିଆଟା ଖାଉଁ ଖାଉଁ ବୋବାଇ ଗୋଡ଼ାଉଛି । ଏ ସମୟରେ ଫେର୍ ଦୂରରେ କୋଉଠି ଗୋଟାଏ ବାଘ, ବଣ ପର୍ବତ କମ୍ପାଇ ଗର୍ଜ୍ଜି-

ଉଠିଲା । ସେ ରଡ ଶୁଣି ପୁଷି ଓ ଝେମିର ରକତ ପାଣି ହୋଇଗଲା ଯିମିତ—ନା, ଆଜି ଆଉ ରକ୍ଷା ନାହିଁ । ଗଧିଆ ହାତରୁ ବଞ୍ଚିଲେ ବାଘ ଖାଇବ, ବାଘ ମୁହଁରୁ ବଞ୍ଚିଲେ ଭାଲୁ ଖାଇବ । କୋଉଠି କୋଉ ବୁଦାମୂଳେ କିଏ ଲୁଚି ବସିଥିବ, ହଠାତ୍ ଯଦି ଉପରକୁ ଡେଇଁ ପଡିବ, ତାହେଲେ ପୁଷି ଆଉ ଝେମି କରିବେ କଣ ? ଡରରେ ଦିହର ରୁମ ଖାଲି ଠାଙ୍କୁର ଯାଉଛି—ଇମିତି ହାଲିଆ ହୋଇଗଲେଣି ଦିହେଁଯାକ ଯେ କହିବାକୁ ନାହିଁ—ଆଉ ଧାଇଁବାକୁ ବଳ ପାଉନି ।

ଆକାଶରେ ସରୁ ଜହ୍ନଟିଏ—ତା'ର ଯୋଗୁଁ ଟିକିଏ ଆଲୁଅ ହେଉଛି ବଣଟା । ହଠାତ୍ ପୁଷି ମିଆଉଁ ମିଆଉଁ ହୋଇ ରଡ ଗୁଡ଼ିଲା, "ଝେମିରେ, ହେଇ ଆଗରେ ସେଇ ନାଳଟା . . . . ।"

ଝେମି ଥମକି ଠିଆ ହୋଇ ପଡ଼ିଲା—ହଁ, ସତରେ ତ ଘୁରି ଘୁରି ଆଉ ଥରେ ସେଇ ନାଳ କୂଳରେ ଦୁହେଁଯାକ ପହଞ୍ଚିଛନ୍ତି । ଝେମିକି ସାଙ୍ଗେ ସାଙ୍ଗେ ବୁଦ୍ଧି ଦିଶିଗଲା । ସେ ଭାଉ ଭାଉ ହୋଇ କହିଲା, "ପୁଷି, ଆଉ ଗୁହିଁକୁ କଣ, ମୋ ପିଠିରେ ଚଞ୍ଚଳ ଚଢ଼ିପଡ଼୍ ?" ତେବେବେକେ ପୁଷି ଚଢ଼ିଲାନି, କହିଲା, "ସେ କୁମ୍ଭୀରଟା ଆଉ କଣ ଆମକୁ ରଖିବ ! ଅନ୍ଧାରରେ କୋଉଠି ପାଣି ଭିତରେ ଥିବ—ଆମକୁ ପାଇଲେ ସାଙ୍ଗେ ସାଙ୍ଗେ ଖାଇଦେବ । 'ଖାଉଁ—ଖାଉଁ' ଅତି ପାଖରେ ଏଥର ଗଧିଆଟା ରଡଟାଏ ଗୁଡିଲା । ପୁଷି ଅତଙ୍କରେ ଝେମି ପିଠି ଉପରେ ଚଢ଼ିଲା କ୍ଷଣି ପାଣିକୁ ଡେଇଁ ପଡ଼ିଲା ଝେମି । ଆଉ ଯଦି ଡେରି ହୋଇଥାନ୍ତା ନା, ତାହେଲେ ଗଧିଆଟା ତାଙ୍କୁ ଧରି ପକାଇଥାନ୍ତା । ହଠାତ୍ ଏ ଦୁହିଁଙ୍କୁ ପାଣିକୁ ଡେଇଁବା ଦେଖି ଗଧିଆ ତ ଅବାକ୍ ! ସେଇଠି ସେ ଥକ୍କା ମାରି ବସିପଡ଼ିଲା, ଇସ୍

ଏତେ ବାଟ ଗୋଡ଼େଇ ଆସିଥିଲା ସେ—ଶିକାର ଦିଟା ଇମିତ ହାତରୁ ଖସି ଗଲେ !

ପାଣିରେ ପହଁରୁଛି ଝିମି । ପୁଷି କାନ୍ଦୁଛି । ଝିମି ତାକୁ ବୁଝେଇ କହିଲା, "ପୁଷିଲୋ, କାନ୍ଦୁଛୁ କାହିଁକି—ନିଜ ହାତରେ ତ ଆମେ ସବୁ କରୁଛେଁ ଆମ ଭାଗ୍ୟରେ ଯଦି ଥିବ, ତାହେଲେ କୁମ୍ଭୀର ଖାଇବ । କୂଳରେ ରହିଥିଲେ ତ ଏତେବେଳକୁ ଗଧିଆ ଖାଇ ସାରନ୍ତାଣି ।" ଝିମି ଏତିକି କହିଛି କି ନାହିଁ ତା ପାଖବାଟେ ସର ସର କରି କଣ ଗୋଟାଏ ଗୁଳିଗଲା । ପୁଷି ତ ଚମକିପଡ଼ି ଆଉ ଟିକକୁ ପାଣିରେ ପଡ଼ି ଯାଇଥାନ୍ତା । ଝିମି ବି ଚମକି ପଡ଼ିଲା । ଦେଖିଲା ବେଳକୁ ମାଛଟାଏ ।

ଦିନଯାକ ବୁଲି ବୁଲି କୁମ୍ଭୀର କୋଉଠି ଶୋଇ ପଡ଼ିଛି । ପୁଷି ଓ ଝିମି ଖାଲି ଭଗବାନଙ୍କୁ ଡାକୁଥାଆନ୍ତି "ହେ ଭଗବାନ··· କୁମ୍ଭୀର ଆମକୁ ନ ଦେଖୁ··· ।"

ଯା'ହେଉ, ଶେଷରେ ଦିହେଁଯାକ ଏପଟକୁ ଗୁଳି ଆସିଲେ । ଏପଟେ ଆଉ କିଛି ଭୟ ନାହିଁ । ରାତି ଏଗାରଟା ବେଳକୁ ପୁଷି ଓ ଝିମି ଯାଇ ଘରେ ହାଜର । ସମସ୍ତେ ଦୁଆର ଦେଇ ଶୋଇ ପଡ଼ିଥାଆନ୍ତି,ହେଲେ ବୁଲୁଟାର ଆଖିରେ ନିଦ ହୋଇ ନ ଥାଏ । କୁଆଡ଼େ ଗଲେ ଏ ପୁଷି ଆଉ ଝିମି, ସଞ୍ଜବେଳୁଁ ଖୋଜି ଖୋଜି ଆଉ ସେମାନଙ୍କର ପତ୍ତା ମିଳୁନି ! ବୁଲୁର ମନ ଏକାବେଳେକେ ଖରାପ । ପୁଷି ଆଉ ଝିମି ନଥିବାରୁ ଘରଟା ବଡ଼ ଖାଲି ଖାଲି ଲାଗୁଛି । ବୁଲୁର ମନ କେଉଁଥିରେ ଲାଗୁନି । ବିଛଣାରେ ପଡ଼ି ପଡ଼ି ସେ ଭାବୁଥିଲା ଝିମି ଆଉ ପୁଷି କଥା । ଏ ସମୟରେ ବାହାରୁ ଶୁଭିଲା, "ମି-ଆ ଉଁ···ମି-ଆ-ଉଁ···ଭ···ଉ···ଭ···ଉ···!!"

ଏକା ଡ଼ିଆଁକେ ବୁଲୁ ଯାଇ ଦାଣ୍ଡଦୁଆରେ ହାଜର । କବାଟ ଖୋଲିଲା କ୍ଷଣି ବୁଲୁର ଏ ଗୋଡ ତଳେ ପୁଷି, ସେ ଗୋଡ ତଳେ ଝମି ।

"ଆରେ ତମେ ଦୁଇଟାଯାକ ଯାଇଥିଲ କୁଆଡେ ? ଖୋଜି ଖୋଜି ମୁଁ ହଇରାଣ ହୋଇଗଲିଣି···" କହିଲା ସେ ।

ବୁଲୁର ପାଦରେ ମୁହଁଟିମାନ ଘଷି ଦହେଁଯାକ କୁଁ କୁଁ ହେଲେ । ଆଉ କରିବେ କଣ ? ଲାଜରେ ଦୁଃଖରେ ମୁହଁ ଟେକି ପାରୁନାହାନ୍ତି । ଆଦର କରି ବୁଲୁ ସେ ଦହିଁଙ୍କୁ ନିଜ କୋଳ ଉପରକୁ ଉଠାଇ ନେଇ ଘର ଭିତରକୁ ଗଲା । ଏତେବେଳକୁ ବୁଲୁର ଆଦର ପାଇ ଦହେଁ ଆଉ କୋହ ସମ୍ଭାଳି ପାରିଲେନି,କାନ୍ଦି ପକାଇଲେ । ଥପ୍ ଥପ୍ ହୋଇ ଖାଲି ଲୁହ ବୋହିପଡିଲା ସେମାନଙ୍କ ଆଖିରୁ । ପୁଷି ଆଉ ଝମିଙ୍କି ଆଖିରେ ଲୁହ ଦେଖି ବୁଲୁବାବୁ ତ ବ୍ୟସ୍ତ ହୋଇପଡ଼ିଲେ । କେତେ ଆଉଁସା ପାଉଁସା କରି ଆଖିରୁ ସେମାନଙ୍କର ଲୁହ ପୋଛିଦେଲେ । ଗରମ ଦୁଧ ଓ ପାଉଁରୁଟି ଆଣି ଖାଇବାକୁ ଦେଲେ । ହଠାତ୍ ତାର ନଜର ପଡ଼ିଲା, ଦହିଁଙ୍କ ପାଦ-ଗୁଡାକ ଉପରେ—କଣ୍ଟା ସବୁ ଗଳି ରକ୍ତ ବାହାରି ଶୁଖିଯାଇଛି ! ଇସ୍,ଏ ଦିଟା ତାହାହେଲେ ସେହି ଜଙ୍ଗଲକୁ ପଳେଇଥିଲେ···ବୁଲୁ ଜାଣିଲା । ଯତ୍ନ କରି ଯାହା କଣ୍ଟା ରହିଯାଇଥିଲା, ସେ ସବୁକୁ କାଢ଼ି ତେଲ ଟିକିଏ ଗରମ କରି ଲଗାଇ ଦେଲା···ଦରଜ ଖାଇଯିବ । ଶବ୍ଦ ଶୁଣି ବୁଲୁବାବୁଙ୍କର ବୋଉ ବି ଉଠିପଡିଥିଲେ । ଦହିଙ୍କ ଅବସ୍ଥା ଦେଖି ସେ ମଧ୍ୟ କେତେ ଚୁ ଚୁ କଲେ । ପୁଷି ଓ ଝମିକୁ ନେଇ ବୁଲୁ ତାଙ୍କର ଶୋଇବା ଜାଗାରେ ଶୁଆଇଦେଇ ନିଜେ ବୋଉଙ୍କ ପାଖରେ ଶୋଇବାକୁ ଗଲା ।

ଆଃ, କି ଆରାମ୍...ପୁଷି ତା ନିଜ ଶେଯରେ ଶୋଇଛି ଆଉ ଝେମି ତା ନିଜ ଶେଯରେ ଶୋଇଛି । ଜଙ୍ଗଲ କଥା ମନେ-ପଡ଼ିଲେ ଏବେ ମଧ୍ୟ ଦେହଟା ଶିତେଇ ଯାଉଛି ପୁଷିର । ଥର ଥର କହିଲା ପୁଷି, "ଝେମିରେ, ଶୋଇଲୁଣି ?"

ଝେମିର ଆଖି ଦିଟା ବୁଜିହୋଇ ଆସୁଥିଲା । ଓଃ ! ଆଜି ଯାହା ଦୌଡ଼ା ହୋଇଛି । ପୁଷିର ଡାକ ଶୁଣି ସେ ଆଖି ମେଲି ଗୁହଁ କହିଲା, "ଶୋଇନି ଯେ, ହେଲେ ଏଇଲେ ନିଦ ହୋଇଯିବ...।"

ପୁଷି କହିଲା, "ଜଙ୍ଗଲ କଥା ମନେପଡୁଛି ଝେମି ?" ଝେମି କହିଲା, "ମନେ ପଡ଼ିବନି ? ବାବାରେ ବାବା, ଆଜି ମରୁ ମରୁ ବଞ୍ଚିଲେ ପରା । ଶୁଣ୍ ପୁଷି, ଆଉ ଜୀବନରେ କେବେହେଲେ ଦୁଷ୍ଟାମି କରିବାନି । ଦେଖିଲୁନା, ବୁଲ୍‌ବୁଲ୍‌ବାବୁ କେତେ ଭଲ ମଣିଷ । କେତେ ସେବାକଲେ ଆମର । ତାଙ୍କ ଭଳି ଆଉ କିଏ ହେବ ?"

ପୁଷି କହିଲା, "ଆଉ କେବେ ଦୁଷ୍ଟାମି କରିବାନି କି ଚୋରି କରିବାନି । ବୁଲୁବାବୁଙ୍କର କଥା କଥା ମାନିବା ସବୁବେଳେ, ଆଉ କେବେ ତାଙ୍କୁ ଛାଡ଼ି ଯିବାନି ।" ଝେମି କହିଲା, "କୁମ୍ଭୀର ଆଉ ଗଧିଆ କଥା ମନେ ପଡୁଛି ପୁଷି ?"

ପୁଷି ଡରରେ ଆଖି ବୁଜିପକାଇ କହିଲା, "ତୁ ଆଉ ସେକଥା ମତେ କହନାରେ ଝେମି...ସେ କଥା ଭାବିଲାକ୍ଷଣି ମୋ ଦେହଟା ଶିତେଇ ଯାଉଛି...।"

ଏପରି କଥାବାର୍ତ୍ତା ହୋଇ ପୁଷି ଓ ଝେମି ଦିହେଁଯାକ ନିଶ୍ଚିନ୍ତରେ ଶୋଇ ପଡ଼ିଲେ ।



# ଜୟନ୍ତ କୁମାର

ଗୋଟିଏ ରାଇଜରେ ଜଣେ ରାଜା ଥିଲେ । ତାଙ୍କର ଅନେକ ଧନ ସମ୍ପତ୍ତି ଥିଲା, ହେଲେ କ'ଣ ହେବ ସେ ନିଜ ପ୍ରଜାମାନଙ୍କର କଷ୍ଟ ସୁଖ ସୁବିଧା କଥା ବୁଝୁ ନ ଥିଲେ । ତାଙ୍କ ରାଜ୍ୟରେ ପ୍ରଜାମାନେ ଖୁବ୍ ଦୁଃଖରେ ଥାଆନ୍ତି ।

ରାଜାଙ୍କର ଦୁଇଟି ପୁଅ । ବଡପୁଅର ନାମ ଜୟନ୍ତ କୁମାର ଓ ସାନପୁଅର ନାମ ଅଜିତ କୁମାର । ବେଶ ଗୋରା ତୋରା ହୋଇ ଉଜ୍ଜ୍ୱଳ ଡାଉଳ ଦିଶୁ ଦୁଇଟି ପୁଅ ଚନ୍ଦ୍ର ପରି ବଢୁଥାନ୍ତି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ରାଜା ସେମାନଙ୍କପାଇଁ ଗୁରୁ ଠିକ୍ କଲେ । ପାଠପଢ଼ା, ଘୋଡାଚଢ଼ା, ଖଣ୍ଡାଯୁଦ୍ଧ ପ୍ରଭୃତି କେତେ ପ୍ରକାର ସବୁ ବିଦ୍ୟା ଦୁହେଁ ଶିଖିଲେ ଗୁରୁଙ୍କ ପାଖରୁ । ଅଜିତଠୁ ଜୟନ୍ତଙ୍କ ବେଶୀ ବୁଦ୍ଧିମାନ କିନ୍ତୁ ଖୁବ ଶାନ୍ତଶିଷ୍ଟ, ଆଉ ପରର ଦୁଃଖ କମା ସେ ଦେଖି ପାରେନା । ରଜା ପୁଅ, କୋଉ କଥା ବା

ଅପୂରୁବ ଅଛୁ ! ପାଟିରୁ କଥା ବାହାରୁ ନ ବାହାରୁଣୁ ସବୁ ଟଙ୍କ ପାଖରେ ହାଜର ହୋଇ ଯାଉଥିଲା । କେତେ ଗୃକର ବାକର ରହିଥାନ୍ତି ଖଟିବାକୁ । କିଛୁ ବୋଇଲେ କିଛୁ ଚିନ୍ତା ନଥାଏ, ହେଲେ ଜୟନ୍ତଟା ସବୁ ବେଳେ କିଛୁ ନା କିଛୁ ଖବୁଥାଏ । ଗୃକର ବାକର ଭିତରୁ କାହାକୁ ଜର ରୋଗ ହେଲା ତ ଜୟନ୍ତ ନିଜେ ଔଷଧ ନେଇ ତା ପାଖରେ ହାଜର ହୋଇ ଯାଉଥିଲା । କିଏ ଭିଖ ମାଗିବାକୁ ଉଆସକୁ ଆସିଲା ତ ନିଜେ ଜୟନ୍ତ ହାତରେ ଧନ ଦରବ ନେଇ ତାକୁ ଦେଉଥିଲା ।

ଥରେ ଉଆସ୍ରୁ ଗୁରୁଙ୍କ ପାଖକୁ ପାଠ ପଢ଼ିବାକୁ ଗଲା ବେଳକୁ ଜୟନ୍ତ ·ଦେଖିଲା ବୁଢ଼ୀଟିଏ ଶୀତରେ ଥୁରୁ ଥୁରୁ ହେଉଛି । ଘୋଡ଼ି ହେବାକୁ ତାର କିଛୁ ନାହିଁ । ଦେହରେ ଚିରା କୋଚରା ଲୁଗା ଖଣ୍ଡେ ପିନ୍ଧିଛି । ସାଙ୍ଗେ ସାଙ୍ଗେ ଜୟନ୍ତ କ'ଣ କଲା ନା, ନିଜ ଦେହରୁ ଶୀତ ଗୁଦର ଖଣ୍ଡିକ କାଢ଼ି ବୁଢ଼ୀ ଦେହରେ ଘୋଡାଇ ଦେଲା । ସାଙ୍ଗରେ ଯୋଉ ଲୋକମାନେ ଥିଲେ-- ସେମାନେ ଏ କଥା ଦେଖି ବିରକ୍ତ ହେଲେ । ଅଜିତ ତ ଏକା ବେଳକେ ରାଗିଗଲା, ଛି ଛିଃ, ରଜା ପୁଅ ହୋଇ ଏ କି ଢଙ୍ଗ ଜୟନ୍ତର ! ବାପା ଶୁଣିଲେ ରାଗିବେ···।

ସମସ୍ତଙ୍କ କଥା କଥା ଶୁଣି ଜୟନ୍ତ ଚୁପ୍ ହୋଇ ରହିଲା । ପଦେ ହେଲେ ଉତ୍ତର ଦେଲାନି । ଆଉ ଦିନେ କିନ୍ତୁ ଅଜିତ ରାଗ ସମ୍ଭାଳି ପାରିଲାନି ।

ଦି ଭାଇ ଯାକ ଗୁରୁଙ୍କ ଘରୁ ଫେରୁ ଥିଲେ । ବାଟରେ ଦେଖିଲେ ଲେଙ୍ଗୁ କୋଙ୍ଗୁ ବୁଢାଟିଏ ଗଛମୂଳେ ସାଉଁଟି କାଠି କୁଟା

କରି ବଡ଼ାଟିଏ ବାନ୍ଧିଛି । ହେଲେ ବଡ଼ାଟିକୁ ଆଉ ଟେକି ପାରୁନି । ଯେତେ ଥର ମୁଣ୍ଡକୁ ଟେକୁଛି, ସେତେ ଥର ବଡ଼ାଟି ତଳେ ପଡ଼ି ଯାଉଛି । ବୁଢ଼ା ଏକାବେଳେ ଝାଳନାଳ ହୋଇ ଗଲଣି, ସ୍ୱା ଦେଖି ଜୟନ୍ତ ମନରେ ବଡ଼ କଷ୍ଟ ହେଲା, ହେଲେ ତା ପାଖରେ ପଇସା ସେତେବେଳେ ନଥିଲା । କ'ଣ କରିବ ? ଚାକରଟିକୁ କହିଲା ବୁଢ଼ାର କାଠ ବୋଝଟି ମୁଣ୍ଡାଇ ବୁଢ଼ା ଘରେ ପହଞ୍ଚାଇ ଦେବାକୁ । କିନ୍ତୁ ଏକଥା ଶୁଣି ଚାକରଟି ଚୁପ୍ ହୋଇ ରହିଲା—ସେ ରାଜାଘରର ଚାକର, ସେ ପେଣ୍ଡ କାଠ ବୋଝ ମୁଣ୍ଡାଇ ଦାଣ୍ଡରେ ଚାଲିବ ? ଜୟନ୍ତର କଥା ନ ଶୁଣିଲା ପରି ସେ ଚାଲିବାକୁ ଲାଗିଲା ।

ଜୟନ୍ତ ଠିଆ ହୋଇପଡ଼ି କଣ ଟିକିଏ ଭାବିଲା, ତାପରେ ଅଜିତକୁ କହିଲା, "ତମେ ସବୁ ଆଗେ ଆଗେ ଯାଉଥାଅ । ମୁଁ ଏ କାଠ ବୋଝ ବୁଢ଼ାଘରେ ପହଞ୍ଚେଇ ଦେଇ ଯିବି ।" ଏତକ କହି କିଏ କିଛି କହିବା ପୂର୍ବରୁ ବୁଢ଼ା ପାଖକୁ ଯାଇ ତାଙ୍କ କାଠ ବୋଝଟିକୁ ନିଜ କାନ୍ଧ ଉପରକୁ ଟେକି ଦେଲା ।

ବୁଢ଼ା ତ ଆଁ କରି ଚାହିଁଛି । ରଜା ଘରର ପୁଅ । ଏତେ ସୁନ୍ଦର ସୁକୁମାର ଦେହ । ସେ ପେଣ୍ଡ ତା କାଠ ବୋଝ ମୁଣ୍ଡାଇ ଯିବେ ! ବୁଢ଼ା ନେହୁରା ହୋଇ କେତେ ଥର କହିଲା ବୋଝ ଓହ୍ଲାଇବାକୁ କିନ୍ତୁ ଜୟନ୍ତ ଶୁଣିଲାନି । ବୁଢ଼ାକୁ ତା ଘର ଆଡ଼କୁ ଚାଲିବାକୁ କହିଲା । ଦୁହେଁ ସେଠୁ ଚାଲିଲେ ।

ଏ କଥା ଦେଖି ଚାକର ଚାକରାଣୀ ଗୁଡ଼ାକ ଅବାକ୍ ହୋଇ ଚାହିଁ-ରହିଥାନ୍ତି । ଆଉ ଅଜିତ ରାଗରେ ପାଚି ଯାଉଥାଏ । ଘରକୁ ଯାଇ ସିଧା ଅଜିତ ବାପାଙ୍କ ପାଖରେ ହାଜର ହୋଇଗଲା ଆଉ ବଡ଼ ଭାଇର କୀର୍ତ୍ତି କଥା ଗୋଟି ଗୋଟି କରି କହିଲା । ରଜା ଶୁଣି

ଆହୁରି ରାଗିଗଲେ—ଜୟନ୍ତ ରାଜା ଘରର ପୁଅ ହୋଇ ଏସବୁ କଣ କରୁଛି ! ଛିଃ ଛିଃ, ଶେଷକୁ ରଜାପୁଅ ହେଇ ରାସ୍ତା ମଝିରେ କାଠ ବୋଝ ମୁଣ୍ଡେଇ ଚାଲିଲା, ତାକୁ ଟିକିଏ ବୋଲି ଲାଜ ସରମ ନାହିଁ ! ଜୟନ୍ତ ! ତାଙ୍କର ଏତେ ବଡ଼ ରାଜ କୁଳରେ କାଳି ଲଗେଇବ, ମଳ ମୁଣ୍ଡି ଆଙ୍କ ସାଙ୍ଗରେ ମିଶି ଦେବ ଚାଲିବ, ତାହେଲେ ରାଜଗାଦିରେ ବସି ରାଇଜ ଚଳେଇବ କଣ ... ଏ ସବୁ କହି ରାଜା ଖାଲି ରାଗରେ ଜଳୁଥାନ୍ତି ।

ବିଚରା ଜୟନ୍ତ ଏଣେ କାଠ ବୋଝ ମୁଣ୍ଡାଇ ବୁଢା ଘରେ ପହଞ୍ଚାଇ ଦେଲା । ବୁଢାର କୁଡିଆଟିକୁ ଦେଖି ଜୟନ୍ତର ଆଖିରୁ ଲୁହ ଝରି ପଡିଲା । ସାନ ଚାଳଘର ଖଣ୍ଡେ, କେତେ ବର୍ଷ ହେଲା ଛପର ହେଇନି—ଚାଳଯାକ କଣା । ବର୍ଷା ଦିନରେ ପାଣି ଗଳୁଛି, ଖରାଦିନେ ଖରା ପଶି ଆସୁଛି ଭିତରକୁ । ବୁଢୀଟିଏ ଅଛି, ତାର ଫେର୍ ଆଖିକୁ ଦିଶୁନି ।

ଘର ଭିତରେ ମାଟିର ଦରଭଙ୍ଗା ହାଣ୍ଡି ମାଠିଆ ପୁଞ୍ଜେ ଆଉ ଖଣ୍ଡେ ଚିରା କନ୍ଥା, ଦି ଖଣ୍ଡ ଚିରା ଲୁଗା ଛଡା ଆଉ କିଛି ନାହିଁ । ମାଗି ଯାଚି ଚାଉଳ ଗଣ୍ଡେ ଯୋଉ ଦିନ ଆଣନ୍ତି ତ ଖାଆନ୍ତି, ତା ନହେଲେ ଉପାସରେ ରହନ୍ତି ।

ସବୁ ଦେଖି ଶୁଣି ଜୟନ୍ତ ବଡ ଦୁଃଖିତ ହେଇ ପଡିଲା । ବାପାଙ୍କୁ କହି ବୁଢ଼ାକୁ ଠଙ୍କା ପଇସା କିଛି କରେଇଦବ ଭାବି ଘରକୁ ଫେରିଲା । ହେଲେ ଉଆସ ଭିତରକୁ ପଶୁ ନ ପଶୁଣୁ ରାଜା ଡକେଇ ପଠେଇଲେ ଆଉ ଇମିତି ଗାଳି ଦେଲେ ଯେ କହିବାକୁ ନାହିଁ । ଜୟନ୍ତ ତାଙ୍କୁ କେତେ ବୁଝାଇଲା ଯେ ଲୋକେ ଖାଇବାକୁ

ଗଣ୍ଡେ ନ ପାଇ ଭୋକ ଉପାସରେ ତାଙ୍କ ରାଜ୍ୟରେ ରହି କେତେ କଷ୍ଟ ପାଉଛନ୍ତି । ଏଣେ ରାଜାଙ୍କ ଭଣ୍ଡାର ଘରେ ଧନ ଦରବ ଭର୍ତ୍ତି ହେଉଛି । ଅମାରରେ ଧାନ ଗଦା ହୋଇଛି । ମୂଷା ଖାଇ କେତେ ଧାନ ନଷ୍ଟ ହେଉଛି । ନିତ ଭାତ ତିଅଣ କେତେ କେତେ ରନ୍ଧା ହୋଇ ଫୋପଡା ହେଉଛି । ତା ବଦଳରେ ଯଦି ନିତ ଗରିବ ଲୋକଙ୍କ ଭିତରେ ସେ ସବୁ ବଣ୍ଟା ଯାଆନ୍ତା, ତାହେଲେ ଲୋକେ କେତେ ସୁଖରେ ରହନ୍ତେ । ସେମାନଙ୍କର ଆଉ କିଛି ଦୁଃଖକଷ୍ଟ ରହନ୍ତା ନାହିଁ ।

ପୁଅର କଥା ଶୁଣି ରଜାଙ୍କ ମନ ବଦଳିବ କଣ ଓଲଟି ସେ ନିଆଁବାଣ ହୋଇଗଲେ — କାଲିର ପିଲଟେ ହୋଇ ଜୟନ୍ତ ପୁଣି ତାଙ୍କୁ ଉପଦେଶ ଦେଉଛି — ଜୟନ୍ତର ତ ଭାରି ସାହସ ବଢ଼ିଗଲାଣି । ସେ ସଫା ସଫା କହିଲେ, "ଦେଖ୍ ଜୟନ୍ତ ! ତତେ ଯଦି ରାଜ ସିଂହାସନକୁ ଲୋଭ ଅଛି ତ ଆଜିଠୁ ଏ ଫକରଗିରି କରିବା ଛାଡ୍ । ଆଉ ଦିନେ ଯଦି ତୁ ଏ ପ୍ରକାର କଥା କରୁଛୁ ବୋଲି ଶୁଣିବି, ତାହେଲେ ତତେ ମୋ ରାଜ୍ୟରୁ ନିର୍ବାସନ ଦଣ୍ଡ ଦେବି — ଅନ୍ଧାରକୁ ରଙ୍କା କରିବ — ।"

ଏ କଥା ଶୁଣି ଜୟନ୍ତକୁ ବଡ କଷ୍ଟ ଲାଗିଲା । ସେ ତ କିଛି ଅନ୍ୟାୟ କଥା କହିନି, ତେବେ ବି ବାପା ଏପରି କଡା କଥା କହିଲେ । ସେ ରାତିଟା ଯାକ ଜୟନ୍ତ ଆଖିରେ ନିଦ ନାହିଁ — ସାରା ରାତି ସେ ଖାଲି ଭାବୁଥାଏ । ଥରକୁ ଥର ବୁଢ଼ୀର ସେଇ ଖଣ୍ଡିଆ କୁଡିଆଟିର ଛବି ଆଖି ଆଗରେ ତାର ନାଚୁଥାଏ ।

ସେ ଭାବିବାକୁ ଲାଗିଲା···ଲୋକେ ଏମିତି ଭୋକ ଉପାସରେ ଛଟପଟ ହେଉ ଥିବେ ଆଉ ସେ ଉଆସରେ ବସି ଦୁଧ ଭାତ ଖିରି

ପିଠା ମଣ୍ଡା ଖାଇ ବଞ୍ଚିବ ? ଯୋଉ ରାଜ୍ୟର ଲୋକେ ଏମିତି ନ ଖାଇ ନ ପିଇ ମରନ୍ତି, ସେମିତି ରାଇଜରେ ରଜା ହୋଇ ସୁଖ କ'ଣ !! ବାପାଙ୍କ ଇଚ୍ଛା ଅଜନ୍ତକୁ ଏ ରାଜ୍ୟର ରଜା କରିବେ, ସେ ଭଲ ରୂପେ ରାଇଜ ଚଳେଇ ପାରିବ । ଜୟନ୍ତ ଭାବିଲା, ମୁଁ କାଲି ଉଠି ଯୁ ଆଡେ ଦି'ଆଖି ଯାଇବ ସେଇ ଆଡକୁ ସେ ପଳେଇବ, ଆଉ ଏ ନଅରରେ ରହିବନି – ଅଜନ୍ତ ଏ ରାଜ୍ୟର ରାଜା ହେଉ ।

ଯା'ଭାବ ଅତି ଭୋରରୁ ଉଠି କାହାକୁ କିଛି ନ କହି ଜୟନ୍ତ ନଅର ଭିତରୁ ବାହାରି ପଡ଼ିଲା । ସେ ରାଜା ପୋଷାକ ସବୁ ପାଲଟି ଦେଇ ସାଦା ସିଧା ପୋଷାକ ପିନ୍ଧି ବାହାରିଲା । ସାଙ୍ଗରେ ପକ୍ଷୀରାଜ ଘୋଡାଟିକୁ ବି ନେଲାନି, ପାଦରେ ଚାଲି ଚାଲି ଯିବାକୁ ଲାଗିଲା ।

କ୍ରମେ ସୂର୍ଯ୍ୟ ଉଇଁଲେ । ଖରା ମାଡ଼ି ଆସିଲା । ଜୟନ୍ତ ସେତେବେଳକୁ ତା' ରାଇଜ ଛାଡ଼ି ଅନେକ ଦୂରକୁ ଚାଲି ଆସିଲାଣି । ନାକ ସଳଖେ ଚାଲିଥାଏ, କୁଆଡେ ଯାଉଛି, କୋଉଠିକି ଯାଉଛି, କିଛି ସେ ଜାଣେନି, ଗୋଟାଏ ଲହସରେ ଚାଲିଥାଏ । କ୍ରମେ ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେ, ଦେହକୁ ଖରାଟା ଝାଉଁ ଝାଉଁ କଲା ଲାଗୁଥାଏ । ଭାରି ଭୋକ ହେଲାଣି ଜୟନ୍ତକୁ, ଶୋଷରେ ପାଟି ଅଠା ଅଠା ହୋଇ ଯାଉଛି । ଆଉ ଚାଲି ହେଉନି । ରଜା ଘରର ପୁଅ, ସୁକୁମାର ଦେହ – ଏ ପରିଶ୍ରମ କେତେ ସହିବ ? ହାଲିଆ ହୋଇ ଜୟନ୍ତ ଗୋଟାଏ ବଡ଼ ଗଛମୂଳ ଦେଖି ବସି ପଡ଼ିଲା । ବସୁ ବସୁ ତା'କୁ କେତେବେଳେ ନିଦ ଲାଗିଯାଇଛି ସେ ଜାଣେନି । ହଠାତ୍ କାହା ଡ଼ାକରେ ତା' ନିଦ ଭାଙ୍ଗିଗଲା । ଦେଖିଲା ବେଳକୁ ବୁଢୀଟିଏ ତା'କୁ ଉଠାଉଛି ।

ଜୟନ୍ତର ମୁହଁ ଦେହରୁ ଝାଳ ପୋଛି ପାଛି ଦେଇ ବୁଢ଼ୀ କହିଲା, "ଆହା, ଏ ଖରାରେ ଚାଲି ମୂଳାହାତରେ ପଡ଼ିଛ କାହିଁକି ବାପ ? ଚାଲ୍, ମୋ ଘର ଅଳ୍ପ ଦୂରରେ—ସେଠାକୁ ଯିବୁ । କେଉଁ ଗାଁରୁ ଆସିଲୁ, କୁଆଡ଼େ ଯିବୁ—କେଡ଼େ ସୁନ୍ଦର କଅଁଳ ମୁହଁଟି ଖରାରେ ଝାଉଁଳି ପଡ଼ିଲାଣି !"

ବୁଢ଼ୀର ଏସ ଆଦର କଥା ଶୁଣି ଜୟନ୍ତର ଆଖିରୁ ଲୁହ ଝରି ପଡ଼ିଲା । ପ୍ରଚଣ୍ଡ ଶୋଷ କରୁଛି—ଜିଭ ଖାଲି ଟିଙ୍କି ହୋଇ ଯାଉଛି । କହିଲା, "ମାଉସୀ, ଆଗ ମତେ ମୁନ୍ଦାଏ ପାଣି ଦିଅ, ଶୋଷରେ ମୋ ତଣ୍ଟି ଶୁଖି ଯାଉଛି ।"

ଶୁଣିଲା କ୍ଷଣି ତ ବୁଢ଼ୀ ଦଉଡ଼ିଲା । ଅଳ୍ପ ବେଳ ପରେ ଦହି, ଗୁଡ଼, ପାଣି ସବୁ ଧରି ବୁଢ଼ୀ ହାଜର ହୋଇଗଲା । ଦହିପଣା ମନ୍ଦାକ ଜୟନ୍ତକୁ ଲାଗିଲା ଅମୃତ ପରି । ସେଠୁ ବୁଢ଼ୀକୁ କହିଲା, "ମାଉସୀ, ତମେ ମୋର ବଡ଼ ଉପକାର କଲ, ଆଉ ତମ ଘରକୁ ଯାଇ କାହିଁକି ତମକୁ ହଇରାଣ କରିବ ? ମୋ ବାଟେ ମୁଁ ଚାଲିଯିବି ଏଥର ।"

ହେଲେ ବୁଢ଼ୀ ଛାଡ଼ିଲାନି,—ଏ ଖରାରେ ଏଡ଼େ ସୁକୁମାର ପିଲାଟା ନ ଖାଇ ନ ପିଇ ଯିବ—ସେ କଥା ହବନି । ବୁଢ଼ୀର ଜିଦ୍ ଦେଖି ବାଧ୍ୟ ହୋଇ ଜୟନ୍ତ ତା' ଘରକୁ ଗଲା । ଚୁଲିଟିଆ ଗାଁଟାଏ—କାଠୁରିଆ କୋଡ଼ିଏ ତିରିଶି ଘର ଅଛନ୍ତି । ଜଙ୍ଗଲରୁ କାଠ ହାଣି ତାକୁ ବିକି ପେଟ ପୋଷନ୍ତି ।

ଘରକୁ ନେଇ ବୁଢ଼ୀ କେତେ ଆଦରରେ ପଖାଳ ଭାତ, ଶାଗ ଖରଡ଼ା ମେଞ୍ଚାଏ ବାଢ଼ି ଦେଲା । ସେ ତ ଆଉ ଜାଣିନି ଯେ

ଜୟନ୍ତ ରଜା ଘରର ପୁଅ, ଜୀବନରେ ଏପର୍ଯ୍ୟନ୍ତ ଏ ଜାତି ଜିନିଷ ସେ କେବେ ଖାଇନି !

ଜୟନ୍ତ କିନ୍ତୁ କିଛି ଚିନ୍ତା କଲାନି । ବେଶ୍ ଆନନ୍ଦରେ ପଖାଳ ଭାତ ଖାଇଲା । ରହୁ ରହୁ ଜୟନ୍ତ ସେଇ ଗାଁରେ ବୁଢୀର ଧରମ ପୁଅ ହୋଇ ରହିଗଲା । ବୁଢୀ ପାଇଁ କାଠ କାଟି ଆଣିଦିଏ, ତା'ର ବଗିଚ୍ଚ କାମ କରିଦିଏ । ଗାଁରେ ଯାହାର ଯାହା ଦରକାର ହୁଏ ସମସ୍ତଙ୍କୁ ସାହାଯ୍ୟ କରେ । କିଏ ଜରରେ, ବେମାରିରେ ପଡିଲାତ ଲାଗିପଡି ତା'ର ସେବା କରେ । ଗାଁରେ ସମସ୍ତେ ଜୟନ୍ତଙ୍କୁ ଭାରି ଆଦର କରନ୍ତି—କହନ୍ତି—ସ୍ୱର୍ଗର ଦେବତା ମର୍ତ୍ତ୍ୟ ଲୋକଙ୍କ କଷ୍ଟ ସହି ନ ପାରି ଓହ୍ଲାଇ ଆସିଛି ।

ଇମିତି ସୁଖରେ ଦିନ କଟୁଥିଲା । ଦିନେ କଣ ହୋଇଛି ନା, ଜୟନ୍ତ କାଠୁରିଆଙ୍କ ସାଙ୍ଗରେ ବଣକୁ ଯାଉଛି କାଠ କାଟିବାକୁ, ତା'କୁ ଭାରି ଶୋଷ କଲା । ଆଉ ଟିକିଏ ଭିତରକୁ ଝରଣାଟାଏ ଥାଏ । ଜଣେ କାଠୁରିଆ ଯାଇ ପାଣି ଆଣିବ ବୋଲି କହିଲା, ତେବେ ଜୟନ୍ତ ମନା କଲା । ନିଜେ ଗଲା ଏକୁଟିଆ ପାଣି ପିଇବାକୁ । ଜଙ୍ଗଲ ତ । ପାଣି ପିଇ ସାରି ଆସୁ ଆସୁ ଜୟନ୍ତ ବାଟ ବଣା ହୋଇଗଲା । ସେ ଆଗେଇବାକୁ ଲାଗିଲା, ଦେଖିଲା, କ୍ରମେ କ୍ରମେ ଜଙ୍ଗଲ ଘନ ହୋଇ ଆସୁଛି । ଯାଉ ଯାଉ ଏକବାରେ ଅଗନା ଅଗନି ବନସ୍ତ ଭିତରେ ପଡିଗଲା ଜୟନ୍ତ । ହେଲେ ତା' ମନରେ ତିଳେ ହେଲେ ଭୟ ନ ଥାଏ । କାଠହଣା କୁରାଢୀଟା ହାତରେ ଧରିଥାଏ ସେ ।

ନିଶବଦ ଜଙ୍ଗଲ । ଖାଲି ଝିଙ୍କାରିର ଝିଁ ଝିଁ ଛଡା ଆଉ କିଛି ସ୍ୱର ଶବଦ ନାହିଁ । ଏକମୁହାଁ ହୋଇ ଚାଲିଛି ଜୟନ୍ତ,

ଅନେକ ବାଟ ଯାଇଁ ଭିତରେ ସେ ଚାଲି ଆସିଲାଣି—ବୋଧହୁଏ ଜଙ୍ଗଲଠାରୁ ଆଉ ମୁକ୍ତି ନାହିଁ । ହଠାତ୍ ସିଂହର ଭୟଙ୍କର ଗର୍ଜନ ସେ ଶୁଣି ପାରିଲା, ଆଉ ଟିକିଏ ଯାଆନ୍ତେ ସେ ଗୋଟିଏ ବିଚିତ୍ର ଦୃଶ୍ୟ ଦେଖିଲା । ଅଳପ ଦୂରରେ ଗୋଟାଏ ଭୀଷଣ ସିଂହ ସହିତ ଜଣେ ମଣିଷ ଲଢ଼େଇ କରୁଛି । ମଣିଷଟିର ପୋଷାକରୁ ଜଣାଯାଉଛି, ସେ ରାଜ ପରିବାରର ଲୋକ ।

ଜୟନ୍ତ ଠିଆ ହୋଇ ପଡ଼ିଲା । ସିଂହଟାର ଆଖିରୁ ଯେପରି ନିଆଁ ବାହାରୁଛି, କେଶର ଯାକ ଫୁଲାଇ ଦେଇ ଏକାବେଳେକେ ଉଗ୍ରମୂର୍ତ୍ତି ଧରିଛି ସେ । ହଠାତ୍ ଜୟନ୍ତକୁ ଜଣା ପଡ଼ିଲା ଯିମିତି ଲୋକଟା ହାଲିଆ ହୋଇ ପଡ଼ୁଛି ସିଂହ ସାଙ୍ଗରେ ଲଢ଼େଇ କରି, ହୁଏତ ଆଉ ଟିକିଏ ପରେ ସିଂହ ମାରି ଦେବ ଲୋକଟାକୁ । ଯାହା ହେଉ ଲୋକଟିକୁ ରକ୍ଷା କରିବାକୁ ହାତରେ କୁରାଢ଼ୀଟାକୁ ଠିକ୍ କରି ଧରି ଜୟନ୍ତ ଧାଇଁଗଲା ସିଂହ ଆଡ଼କୁ ।

ଆଉ ସିଂହର ରାଗ ସେତେବେଳେ ଦେଖେ କିଏ ! ସେ ତ ପ୍ରଚଣ୍ଡ ବେଗରେ ଝାମ୍ପି ପଡ଼ିଲା ଜୟନ୍ତ ଉପରକୁ । ଲୋକଟି ମୂର୍ଚ୍ଛା ହୋଇ ତଳେ ପଡ଼ିଗଲା । ଜୟନ୍ତ ଏକୁଟିଆ, ହେଲେ ସେ ଡରିବା ପିଲା ନୁହେଁ । କୁସ୍ତି କସରତ୍ କରି ତା' ଦେହ ପଥର ଭଳି ଟାଣୁଆ ହୋଇ ଯାଇଛି । ସବୁ ପ୍ରକାର ଯୁଦ୍ଧ କୌଶଳ ସେ ଶିଖିଛି—ସେ ଆଉ ଡରିବ ? ସିଂହ ସାଙ୍ଗରେ ଲଢ଼େଇ କରିବାରେ ଲାଗିଗଲା ସେ ।

ବାଁ ହାତରେ ତା'କୁ ଆଗୁଳି ଉପରକୁ ରଖି ତା'ର ନାକ ସିଧା ବିଧାଏ ବସାଇଲା । ତାପରେ ସେ ଲୁହା ଭଳି ହାତମୁଠାରେ

ମାଡରେ ସିଂହର ନାକରୁ ଏକାବେଳେ ପିଚ୍ ପିଚ୍ କନା ରକ୍ତ ବାହାରିଲା । ତଥାପି ସିଂହ ଦବିବାର ଜନ୍ତୁ ନୁହେଁ—ସେ ଖାଲି କିମିତ ଜୟନ୍ତ ଦେହରେ ତା'ର ସେ ଛୁରୀ ପରି ଧାରୁଆ ଦାନ୍ତ ଗୁଡାକ ବସାଇବ, ସେଇ ସୁବିଧା ଖୋଜିଲା । ଏଥର ଜୟନ୍ତ କୁରାଢ଼ୀଟା ଧରି ତା' ମୁଣ୍ଡକୁ ଗୋଟେ ବସାଇଲା । ଇମିତ ଯୁଦ୍ଧ ଲାଗି ଜୟନ୍ତ ଶେଷକୁ ସିଂହଟାକୁ ପ୍ରାଣରେ ମାରିଦେଲା । ହେଲେ ନିଜେ ଏକାବେଳେକେ ହାଲିଆ ହୋଇ ପଡିଥାଏ—ସିଂହ ସାଙ୍ଗରେ ଲଢ଼େଇ କଣ ସାଧାରଣ କଥା ହେଇଛି !!

ଏତେବେଳକୁ ସେ ସେଇ ମଣିଷଟାକୁ ଲକ୍ଷ୍ୟ କଲା । ଦେଖିଲା, ନିଶ୍ଚୟ କୋଉ ଦେଶର ରାଜା । ଖଣ୍ଡାଟି ଦୁଇଗଡ ହୋଇ ତଳେ ପଡିଛି, ମୁକୁଟ ଯାଇ ସାତହାତ ଦୂରରେ । ପାଖରୁ ଯାଇ ଦେହରେ ହାତ ଦେଲା—ଦେଖିଲା ଜୀବନ ଅଛି । ପାଣି ଟିକିଏ ନିହାତି ଦରକାର, ମାତ୍ର ଏ ଅଗନା ଅଟନ ବନସ୍ତରେ ପାଣି କୁଆଡୁ ପାଇବ ଜୟନ୍ତ ? ଏ ପଟେ ତା' ନିଜ ଦେହ ବି ଅବଶ ଲାଗୁଛି ।

ଯା' ହେଉ, ପାଣି ପାଇଁ ଟିକିଏ ଦୂରକୁ ଯାଇଛି କି ନାହିଁ, ଶବ୍ଦ ଶୁଣିଲା, କୋଉଠି କଳ କଳ ହୋଇ ଝରଣା ;ବହି ଯାଉଛି । ଗଛପତ୍ର ଆଡେଇ ଟିକିଏ ଭିତରକୁ ଗଲା ବେଳକୁ ସତକୁ ସତ ପାହାଡଆ ଝରଣାଟେ ବୋହି ଯାଉଛି । ଗଛରୁ ପତ୍ର ତୋଳି ସେଥିରେ ଦନା କରି ଜୟନ୍ତ ପାଣି ନେଲା । ସେଇ ଲୋକଙ୍କ ମୁହଁରେ ପାଣି ସିଞ୍ଚି ଚେତା କରାଇଲା ।

ଉଠି ବସିଲା ପରେ ସେ ନିଜର କାହାଣୀ ଜୟନ୍ତକୁ ଶୁଣେଇଲେ ।

ସେ ହେଉଛନ୍ତି ମାଳବ ଦେଶର ରଜା । ଶୀକାର କରିବା ପାଇଁ ଆସିଥିଲେ । ବରାହଟିଏ ଦେଖି ସାଙ୍ଗ ଲୋକମାନଙ୍କୁ ଛାଡ଼ି ଘୋଡ଼ା ଛୁଟାଇ ତା' ପଛରେ ଦଉଡ଼ିଲେ । ହେଲେ ବରାହଟି କୁଆଡ଼େ ପଳେଇଲା । ରଜାଙ୍କୁ ଆଉ ବାଟ ମିଳିଲାନି । ବୁଲି ବୁଲି ଘୋଡ଼ାକୁ ଶୋଷ କରିବାରୁ ଏଇ ଝରଣା ପାଖରେ ପହଞ୍ଚିଲେ । ଘୋଡ଼ାରୁ ଓହ୍ଲାଇ ତା'କୁ ପାଣି ପିଆଇଲା ବେଳକୁ ସିଂହର ଗର୍ଜନ ଶୁଣିଲେ । ସିଂହ ଗର୍ଜନ ଶୁଣି ଘୋଡ଼ା ତ ଡରିକି ଯାଇ କୁଆଡ଼େ ନା କୁଆଡ଼େ ଚମ୍ପଟ ଦେଲା । ରଜା ଏକୁଟିଆ ସିଂହର ମୁହାଁମୁହିଁ ପଡ଼ିଗଲେ । ଜୟନ୍ତ ଆସି ନ ଥିଲେ ସିଂହ ନିଶ୍ଚୟ ଆଜି ତାଙ୍କୁ ଖାଇ ଦେଇଥାନ୍ତା ।

ରାତି ହୋଇଯିବ—ଦୁହେଁ ଉଠି ପାଦେ ପାଦେ କରି ସେ ଜଙ୍ଗଲ ଭିତରୁ ବାହାରିବାକୁ ଚେଷ୍ଟା କଲେ । ଭାଗ୍ୟକୁ ଅଳ୍ପ ବାଟ ଗଲା ପରେ ମାଳବ ଦେଶ ରଜାଙ୍କ ଲୋକମାନଙ୍କୁ ସେମାନେ ଭେଟିଲେ । ସେମାନେ ଆସୁଥିଲେ ତାଙ୍କ ରଜାଙ୍କୁ ଖୋଜିବାକୁ ।

ଜୟନ୍ତ ମାଳବ ଦେଶରେ ଯାଇ ପହଞ୍ଚିଲା । ରଜା ବେଶ୍ ଚତୁର । ସେ ଜୟନ୍ତର ବଳ, ସାହସ, ଯୁଦ୍ଧ କୌଶଳ ଦେଖି ଠିକ୍ ଠଉରେଇ ନେଲେ ଯେ ସେ ରଜା ଘରର ପୁଅ । ଜୟନ୍ତକୁ ଥରକୁ ଥର ପଚାରିଲେ । ଜୟନ୍ତ ଆଉ ଲୁଚେଇ ରଖି ପାରିଲାନି । ସବୁ ଗୋଟି ଗୋଟି କରି କହିଗଲା ।

ରଜାଙ୍କ ଆନନ୍ଦ କହିଲେ ନ ସରେ । ତାଙ୍କ ଜେମା ପାଇଁ ସେ' ଠିକ୍ ମନଲାଖି ବରଟିଏ । ରୂପରେ, ଗୁଣରେ ଜେମାଙ୍କ ସରି ସମାନ । ତାଙ୍କର ଗୋଟିଏ ବୋଲି ଝିଅ—ମାଳବିକା, ପରିର

ଦୁଃଖ ଦେଖିଲେ ଜୟନ୍ତ ଆଖିରୁ ଯିମିତ ଲୁହ ଝରେ, ମାଳବଙ୍କା ମଧ୍ଯ ସେହିପରି କାହାର ଦୁଃଖ, କଷ୍ଟ ସହି ପାରେନି। ପ୍ରତିଦିନ ସେ ଦରିଦ୍ର ଲୋକମାନଙ୍କୁ ଖାଇବା ଦରବ ନିଜ ହାତରେ ବାଣ୍ଟେ ।

ଖୁବ୍ ଜାକଜମକରେ ଜୟନ୍ତ କୁମାର ସହିତ ମାଳବିକାର ବାହାଘର ହୋଇଗଲା । ଦୁଃଖୀ ରଙ୍କୀ ଲୋକମାନେ ମନ ସୁଖରେ ପେଟେ ଲେଖାଁଏ ଭୋଜି ଖାଇଲେ । ସମସ୍ତଙ୍କୁ କେତେ ସବୁ ନୂଆ ଲୁଗାପଟା ଦିଆ ହେଲା । ଖବର ଶୁଣି ଆଖ ପାଖ ରାଜ୍ୟର ଲୋକେ ବି ଚାଲି ଆସିଥିଲେ ।

ଏଣେ କଣ ହୋଇଛି ନା, ଜୟନ୍ତ ଯିବାପରେ ତାଙ୍କ ରାଜ୍ୟକୁ ଶତ୍ରୁମାନେ ଆକ୍ରମଣ କଲେ । ଲୋକେ ତ ଖାଇବାକୁ ନ ପାଇ ଦୁର୍ବଳ ହୋଇଥିଲେ, ପୁଣି ଜୟନ୍ତ କୁମାର ଚାଲିଗଲେଠୁ ସମସ୍ତେ ରାଜାଙ୍କ ଉପରେ ମନେ ମନେ ଚିଡି ରହିଥିଲେ । କେହି ଯୁଦ୍ଧରେ ଯୋଗ ଦେଲେନି । ଅଳ୍ପ କେତେ ଜଣ ସୈନ୍ୟଙ୍କୁ ନେଇ ରାଜା ଆଉ ଅଜିତ କେପରି ବା ଜିଣିବେ ! ଶତ୍ରୁମାନେ ଅତି ସହଜରେ ରାଜ୍ୟ ଅଧିକାର କରିନେଲେ ।

ରାଜା,ରାଣୀ ଆଉ ଅଜିତ କୁମାର ଲୁଚି ଲୁଚି ବୁଲୁଥାନ୍ତି । ଖାଇବା ପିଇବାର କିଛି ଠିକଣା ନ ଥାଏ । କେବେ ଗଛ ମୂଳେ, କେବେ କାହା ପିଣ୍ଡା ତଳେ ରାତିରେ ଶୁଅନ୍ତି, ମାଗି ଯାଚି ଖାଆନ୍ତି । ଲୁଗା ପଟା ସବୁ ଚିରି ମଇଳା ହୋଇ ଗଲଣି । ଦେଖିଲେ ଆଉ କିଏ ତାଙ୍କୁ ରଜା, ରାଣୀ ଆଉ ରଜାପୁଅ ବୋଲି କହିବନି ।

ଦିନେ ମାଳବ ଦେଶର ରଜା କିମିତି ସବୁ ଖାଇବାକୁ ପିଇବାକୁ ଦେଉଛନ୍ତି ଶୁଣି ବାପ ମା ପୁଅ ତିନିହେଁ ବାହାରିଲେ ସେଇ ଦେଶକୁ ।

ବସାଇ ପଡ଼ୁଆଛନ୍ତି । ଦୁଃଖୀ ରଙ୍କୀ ଲୋକେ ସବୁ ଧାଡ଼ି ହୋଇ ଖାଇବାକୁ ବସିଥାନ୍ତି । ତାଙ୍କ ମଝିରେ ବସିଥାନ୍ତି ଜୟନ୍ତଙ୍କ ବାପ,ମା ଆଉ ଅଜିତ କୁମାର ।

ମାଳବିକା ଆଉ ଜୟନ୍ତକୁମାର ନିଜ ହାତରେ ପରଶୁ-ଥାନ୍ତି, ଦେଖିଲେ କେହି କହିବନି ରଜା ପୁଅ ଆଉ ରଜା ଝିଅ ବୋଲି । ଦେହରେ ସାଦା ସିଧା ଲୁଗା । ହୀରା, ମୋତି, ମାଣିକ୍ୟ କିଛି ନାହିଁ । ହେଲେ ବି ସେମାନଙ୍କୁ ବେଶ ବଡ଼ ସୁନ୍ଦର ଦିଶୁଥାନ୍ତି । ହସ ହସ ମୁହଁରେ ସମସ୍ତଙ୍କୁ ପଚାରି ପଚାରି ଯାଚି ଯାଚି ଦେଇ ଆସୁ ଥାଆନ୍ତି ।

ଜୟନ୍ତ ଯିମିତି ତାଙ୍କ ମା'ଙ୍କ ପାଖକୁ ଆସିଛନ୍ତି, ରାଣୀ ଉଠିପଡ଼ି ତାଙ୍କୁ କୁଣ୍ଢାଇ ପକାଇ କହିଲେ "ମୋ ଜୟନ୍ତରେ !"

ଜୟନ୍ତ ତ ଆଶ୍ଚର୍ଯ୍ୟ ହୋଇ ଗ୍ଲୁହିଁଛନ୍ତି । ଟିକିଏ ପରେ ସେ ବାପା, ମା ଆଉ ଅଜିତଙ୍କୁ ଚିହ୍ନିଲେ । ବାପା, ମା, ଭାଇଙ୍କ ଅବସ୍ଥା ଦେଖି ଦୁଃଖରେ ତାଙ୍କ ଆଖିରୁ ଲୁହ ଝରି ପଡ଼ିଲା । ବାପାଙ୍କଠୁ ସବୁ କାହାଣୀ ଶୁଣିଲେ । ମାଳବିକା ଆଦର କରି ସମସ୍ତଙ୍କୁ ନେଇଗଲେ ତାଙ୍କ ନଅର ଭିତରକୁ । ଜୟନ୍ତଙ୍କ ବାପା, ମା ଆଉ ଅଜିତ, ମାଳବିକା ଆଉ ଜୟନ୍ତଙ୍କ ଦରିଦ୍ର-ସେବା ଦେଖି ଧନ୍ୟ ଧନ୍ୟ କରୁଥାନ୍ତି । ବାପା କହୁଥାନ୍ତି— "ପ୍ରକୃତରେ ପରର ଉପକାର କରିବା ହେଉଛି ମଣିଷର ସବୁଠାରୁ ବଡ଼ ଧର୍ମ ।"



# ନେଲୁର କୀର୍ତ୍ତି

ସକାଳଟା । ବଗିଚା ଭିତରେ ବୁଲୁଥିଲା ନେଲୁ । ହଠାତ୍ ଦେଖିଲା ଗୋଟିଏ ଜାଗାରେ ଗୁଣ୍ଡୁଚି ମୂଷା ଛୁଆଟାଏ ପଡି ଛଟ-ପଟ ହେଉଛି । ଅତି ସାନ ଛୁଆଟାଏ, କେମିତି ଖସି ପଡ଼ିଛି ତା ବସାରୁ । ଏଠି ତାକୁ ଇମିତି ଅବସ୍ଥାରେ ଛାଡି ଗଲେ ତ ବିରାଡି କି କୁକୁର ଖାଇଯିବେ । ନେଲୁ ସେଇଠୁ କଣ କଲା ନା, ସାବଧାନରେ ମୂଷା ଛୁଆଟାକୁ ଉଠାଇ ହାତରେ ଧରି ଘର ଭିତରକୁ ଆସିଲା ।

ନେଲୁର ବୋଉ ବସି ପରିବା କାଟୁଥାନ୍ତି । ତାଙ୍କର ପାଖରେ ପହଞ୍ଚିଲା ନେଲୁ । କହିଲା, "ବୋଉ, ୟା'କୁ ଆମେ ପୋଷିବା ।"

କଅଁଳିଆ ମୂଷା ଛୁଆଟିକୁ ଦେଖି ବୋଉଙ୍କର ବି ଦୟା ହେଲା । ଛୋଟିଆ ସଫା କନା ଖଣ୍ଡେ ଗାଈ ଦୁଧରେ ବୁଡାଇ ମୂଷା ଛୁଆର ପାଟିରେ ଦେଲେ ବୋଉ । ନେଲୁ ବି ତାଙ୍କୁ ସାହାଯ୍ୟ କଲା । କେଡେ ସୁନ୍ଦର ଚୁକୁ ଚୁକୁ କରି ଦୁଧ ଟିକକ ପିଇଦେଲା ନେଲୁର ଗୁଣ୍ଡୁଚି ମୂଷା ଛୁଆ ।

ଇମିତ ଲଗିପଡ କେତେ ଯତ୍ନରେ ନୂକୁ ଆଉ ତା ବୋଉ ମିଶି ମୂଷା ଛୁଆକୁ ପାଳଲେ । ଗୁଣ୍ଡୁଚି ମୂଷାକୁ ନେପୁର ମୂଷା ବ କହନ୍ତି । ତେଣୁ ନୂକୁ ଆଦରରେ ତା' ନାଁ ଦେଲ 'ନେପୁ' । ନେପୁ ଠିକଏ ବଡ଼ ହେଇଗଲେ । ଭରି ପୋଷା ମାନି ରହୁଥାଏ । ନୂକୁ ସାଙ୍ଗରେ ସବୁବେଳେ ଖେଳେ । କେତେବେଳେ ସୁଡୁ ସୁଡୁ ହୋଇ ତା' ମୁଣ୍ଡ ଉପରେ ଚଢ଼ିଯାଏ, ଧରିବା ଗଲବେଳକୁ ପିଠି ପଛରେ ଲୁଚିପଡେ । କେତେବେଳେ କାନ୍ଧରେ, କେତେବେଳେ କୋଳରେ, ଇମିତ ନୂକୁର ଦେହ ସାରା ଖୁସିରେ ଡେଇଁ ବୁଲୁଥାଏ ନେପୁ । ଆଉ ବୋଉଙ୍କୁ ବ କମ୍ ହଇରାଣ କରେନି । ବୋଉ ଯେତେବେଳେ ପରିବା କାଟୁଥିନ୍ତି କି ସିଲେଇ କରୁଥାନ୍ତି, ସିମିତ ତାଙ୍କ ଦେହ ଉପରେ ଚଢ଼ି ତାଙ୍କୁ ହଇରାଣ କରୁଥାଏ ।

ଥରେ ନୂକୁର ବାପା ତାଙ୍କ ବୈଠକଖାନାରେ ବସି କେତେଜଣ ଭଦ୍ରଲୋକଙ୍କ ସାଙ୍ଗେ କଥାବାର୍ତ୍ତା କରୁଥାନ୍ତି । ଦେଖିଲ-ବେଳକୁ ନେପୁ ଚୁପ୍ ଚୁପ୍ ଯାଇ କେତେବେଳେ ବାପାଙ୍କ କାନ୍ଧ ଉପରେ ଚଢ଼ିଲଣି ! ଗୁଣ୍ଡୁଚି ମୂଷାଟିଏ ଦେଖି ଭଦ୍ରଲୋକ ସ୍ୱମସ୍ତେ ଡାକ ପକେଇଲେ, "ଇସ୍ ! ଆପଣଙ୍କ କାନ୍ଧରେ ଗୁଣ୍ଡୁଚି ମୂଷାଟାଏ !"

ବାପା ବୁଝିପାରିଲେ ଯେ ନେପୁ ଚଢ଼ିଛି । ଧରିବାକୁ ଗଲ କ୍ଷଣି ନେପୁ ଯାଇ ପିଠି ପଛରେ ଲୁଚିଲଣି । ଆଉ ତାକୁ ଧରିବେ କିମିତ ? ନୂକୁକୁ ଡାକ ପକେଇଲେ । ନୂକୁ ଦୌଡ଼ି ଆସି ନେପୁକୁ ନେଲ ବାପାଙ୍କ ପିଠି ଉପରୁ । ଭଦ୍ରଲୋକଙ୍କ ଆଗରେ ଇମିତ ଅପ୍ରସ୍ତୁତ କରିବାରୁ ବାପା ଭରି ବିରକ୍ତ ହେଲେ । ସତରେ ନେପୁର ଭୁଲ୍ ହୋଇଛି । ନୂକୁ ନେପୁକୁ ତା' ନିଜ ଘରକୁ ନେଇ ତା'ର

ଟିକି ମୁଣ୍ଡଟାକୁ ଟିକେ ଆପୁଡ଼ାଇ ତା' କାନ ପାଖରେ କହିଲି, "ହେଇ ନେପୁ, ଦେଖ, ଅଜ କେବେ ଯାଇ ବାପାଙ୍କୁ ବିରକ୍ତ କରିବୁନି । ଯଦି ଇମିତି ଦୁଷ୍ଟାମି କରୁ ତ ମୁଁ ତୋ ସାଙ୍ଗେ ଆଦୌ କଥା ହେବିନି ।"

ନେପୁ ସ୍ଥିର ହୋଇ ବସି ତା'ର ଠେକୁଆ କାନ ପରି ଦୁଇଟା ଠ୍ରେଠ ଠ୍ରେଠ କାନକୁ ଡେରି ନୁକୁର କଥା ଶୁଣିଲି । କଣ ବୁଝିଲି କେଜାଣି, ଆଉ ସେ ଦିନୁ ଗଲନି ବାପାଙ୍କ ବୈଠକ-ଖାନାକୁ ।

ନେପୁ ତ ନୁକୁର ଘର ସାଙ୍ଗ । ସବୁବେଳେ ତା'ର ପଛେ ପଛେ ଥାଏ । ନୁକୁ ତା'କୁ ବୁଝାଇ କହି ଦେଇଛି । ତେଣୁ ସକାଳେ, ସନ୍ଧ୍ୟାବେଳେ ନୁକୁ ପଢ଼ିବାବେଳେ ତା' ବୋଉଙ୍କ ପାଖରେ ବସି ପଢେ, ନେପୁ ଆଦୌ ବିରକ୍ତ କରେନି । ସୁନା ପିଲଟିଏ ପରି ନୁକୁର ଆଖୁକୁ ଲାଗି ବସିଥାଏ । ନୁକୁକୁ ପିଜୁଳି, କାମ୍ବୁରେଲ୍ ପ୍ରଭୃତି ଦେଲାବେଳକୁ ବୋଉ ନେପୁକୁ ବ ସେଥିରୁ ଗୋଟାଏ ଦୁଇଟା ଖାଇବାକୁ ଦିଅନ୍ତି । ପଛ ଦୁଇ ଗୋଡ଼ରେ ବସି ଆଗ ଦୁଇ ଗୋଡରେ ଫଳଟିକୁ ଧରି କି ସୁନ୍ଦର ଖାଇ ଦିଏ ନେପୁ ! ସବୁଠୁ ସୁନ୍ଦର ଦିଶେ ତା'ର ଝାମ୍ପୁରା ଝାମ୍ପୁରା ଲାଞ୍ଜଟା । ପିଠିରେ ତିନୋଟି ଲେଖାଏଁ କଳା ଗାର । ଅତି ଆଦରରେ ନୁକୁ ସେଇ ଗାର ଗୁଡିକ ଉପରେ ହାତ ବୁଲାଇ ଦିଏ । ଲଗିପଡ଼ି କେତେ କଥା ଯେ ଭିତରେ ନେପୁକୁ ଶିଖେଇ ଦେଇଛି ନୁକୁ— ଥାକ ଉପରେ ପେନ୍‌ସିଲ୍‌ଟେ କି ରବରଟେ ରଖି ନୁକୁ ନେପୁକୁ କହେ, "ଯା ନେପୁ, ମୋ ପେନ୍‌ସିଲ୍‌ଟା ଆଣି ଦେଲୁ—।" ସାଙ୍ଗେ

ସାଙ୍ଗେ ଦୌଡ଼ି ଯାଇ ତାର ଗ୍ରେଟିଆ ପାଟିରେ ପେନ୍‌ସିଲଟିକୁ ଧରି ନେପୁ ହାଜର ହୋଇ ଯାଏ ନୁକୁ ପାଖରେ । ଗଛରେ ବଡ଼ିଆ ପିଜୁଳିଟେ ଦେଖିଲାକ୍ଷଣି ନୁକୁ ଗ୍ରେଟିଆ ଗୋଡ଼ଟାଏ ସେଇ ପିଜୁଳି-ଟାକୁ ଲକ୍ଷ୍ୟ କରି ମାରେ, ସାଙ୍ଗେ ସାଙ୍ଗେ ନେପୁ ଗଛ ଉପରେ ସୁଡ଼ୁ ସୁଡ଼ୁ କନା ଚଢ଼ି ଯାଇ ସେଇ ପିଜୁଳିଟାକୁ ଝପ୍ କନା ଛିଣ୍ଡେଇ ଦେଇ ତଳେ ପକାଇ ଦିଏ । ନେପୁ ତଳକୁ ଓହ୍ଲେଇଲା ପରେ ଦିହେଁ ମିଶି ଖାଆନ୍ତି ।

ଏହିପରି ଦିହେ ତ ଘର ସାଙ୍ଗ ହୋଇ ଥାଅନ୍ତି । ହେଲେ ନୁକୁର ସାନ ଭଉଣୀ ମୀନା ନେପୁକୁ ଜମା ଦେଖି ପାରେନି । ନେପୁ ସାଙ୍ଗରେ ସବୁବେଳେ ମୀନାର କଳି । ନେପୁ ଯେତେବେଳେ ମୀନା ସାଙ୍ଗରେ ଖେଳିବାକୁ ଆସେ, ମୀନା ତାକୁ ଦୁର୍ ଦୁର୍ କରେ । ଆଦୌ ପାଖରେ ପୂରେଇ ଦିଏନି । ନୁକୁ ଆଉ ବୋଉ ମୀନାକୁ କେତେ ବୁଝାଇଛନ୍ତି, ହେଲେ ମୀନାଟା ବଡ ଅବୁଝା । ନେପୁ ଉପରେ ତାର ବଡ ରାଗ — ଜମା ସେ ସାଙ୍ଗ ହେଲାନି ନେପୁର ।

ସ୍କୁଲରେ ନୂଆକରି ନାଁ ଲେଖା ହେଲା ନୁକୁର । ପ୍ରଥମ ଦିନ ମାଆ ସଙ୍ଗେ ସ୍କୁଲକୁ ଗଲା ନୁକୁ । ପାଖ ହୋଇ ଥିବାରୁ ସେମାନେ ଚାଲି ଚାଲି ଗଲେ । କ୍ଲାସ୍ ଭିତରେ ପଶିବାକୁ ଯାଉଛି ନୁକୁ, ହଠାତ୍ ତା ଗୋଡ ତଳେ କଣ ସାଲୁ ସାଲୁ ହୋଇ ଲାଗିଲା । ଚମକି ପଡି ନୁକୁ ଦେଖିଲା — ନେପୁ ବି କେତେବେଳେ ଚୁପ୍ କନା ଆସି ଯାଇଛି ତା ପଛେ ପଛେ । ନୁକୁର କ୍ଲାସ୍‌ର ପିଲେ ପିଲେ ଚିମିତ ନେପୁକୁ ଦେଖିଲେ, ଖୁସିରେ ଚାହିଁଆଡେ ଦେଖିଗଲେ ।

ମାଷ୍ଟ୍ରେ ବି ଅବାକ୍ । ଶେଷରେ ନେପୁକୁ ହାତରେ ଟେକି ନେଇ ଟୁକୁ ମାଧିଆକୁ ଦେଲି ତାକୁ ଘରକୁ ନେଇ ଯିବାକୁ ।

ଆଉ ଦିନ ବି ସିମିତ ହଇରଣ କଲା ନେପୁ । ଯେତେ ବୁଝେଇଲେ ବି ଟୁକୁକୁ ଛାଡ଼ି ରହିବାକୁ ରାଜି ନୁହେଁ । ବାଧ ହୋଇ ଟୁକୁ ବୋଉ କଣ କଲେ ନା, ରାତରେ ଯୋଉ ଲୁହା କାଳି ଦିଆ ବାକ୍ସ ଭିତରେ ନେପୁ ଶୁଏ, ତା' ଭିତରେ ବନ୍ଦ କଲେ ନେପୁକୁ । ଟୁକୁ ସ୍କୁଲକୁ ଚାଲିଗଲା ପରେ ତାକୁ ଖୋଲି ହୁଏ ।

ସେ ଦିନ ସ୍କୁଲରେ ମାଷ୍ଟ୍ରେ କହିଲେ ଶ୍ରୁତିଲିଖନ ଲେଖି-ବାକୁ । ବହି ବସ୍ତାନିଟି ଖୋଲି ଦେଇ ଟୁକୁ ଦେଖିଲା— ଆଜି ସେ ଘରୁ ପେନ୍‌ସିଲ୍‌ଟା ଆଣିବାକୁ ଭୁଲି ଯାଇଛି । ମାଷ୍ଟ୍ରେ ଏଇଲେ ଗାଳିଦେବେ । ଟୁକୁ ମନେ ମନେ ଡରିଗଲା । ମୁହଁଟା ତାର ଶୁଖି-ଗଲା ଏକାବେଳେ । ହଠାତ୍ ଏ ସମୟରେ ଦୁଆର ଆଡ଼କୁ ତାର ନଜର ପଡ଼ିଲା— ନେପୁ ବିଚରା କଷ୍ଟେ ମଷ୍ଟେ ଟୁକୁର ପେନ୍‌ସିଲ୍‌ଟା ମୁହଁରେ ଧରି ଆସୁଛି !! ଖୁସିରେ ଟୁକୁ ଡ଼ାକି ପକେଇଲା, "ନେପୁ··· ମୋ ପେନ୍‌ସିଲ୍‌ଟା ଆଣିଛୁ ?"

ମାଷ୍ଟ୍ରେ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଛନ୍ତି । ସାଙ୍ଗ ପିଲାମାନେ ମଧ ଆଶ୍ଚର୍ଯ୍ୟ ହୋଇ ଚାହିଁଛନ୍ତି ନେପୁର କୀର୍ତ୍ତି ଦେଖି । ନେପୁଠାରୁ ପେନ୍‌ସିଲ୍‌ଟା ନେଇ ଟୁକୁ ତାକୁ ଆଦର କରି କେତେ ଆଉଁସି ପକେଇଲା । ନେପୁ ଆଜି ତାର ମାନ ରଖିଛି ।

ଟୁକୁଠାରୁ ମାଷ୍ଟ୍ରେ ବୁଝିନେଲେ କଥାଟା ··· ··କହିଲେ, "ଦେଖିଲ ନା ଜୀବଜନ୍ତୁଙ୍କର କେତେ ବୁଦ୍ଧି ! ସବୁଦିନେ ।

ନେପୁ ଦେଖୁଛି— ଟୁକୁ ତାର ପେନ୍‌ସିଲ୍ ଧରି ସ୍କୁଲକୁ ଆସୁଛି, ଆଜି ଗୁଡ ଆସିବା ଦେଖି ଟୁକୁ ଗୁଡ଼ ଆସିଛି ବୋଲି ଠିକ୍ ଠଉରେଇଛି ସେ ।"

ନେପୁକୁ ସମସ୍ତେ ଟିକିଏ ଟିକିଏ ଆଉଁସି ଦେଲେ । ବେଶ୍ ଆରାମ୍‌ରେ ଆଖି ବୁଜି ଦେଇଥାଏ ନେପୁ ।

ଘରକୁ ଆସିଲା ପରେ ବୋଉ ଏକଥା ଯିମିତି ଶୁଣିଲେ ଖୁସି ହୋଇ ବଡ ପିଜୁଳିଟାଏ ଦେଲେ ନେପୁକୁ ।

ଆଉ ଦିନେ ସ୍କୁଲରୁ ଫେରି ଟୁକୁ ଦେଖିଲା—ମୀନା ନାହିଁ ଘରେ । ଖୋଜି ଖୋଜି ସେଠୁ ଯାଇ ବାଡ଼ି ଆଡେ ପହଞ୍ଚିଲା । ବାଡ଼ି ଭିତରକୁ ଯିବ କି ନାହିଁ ଭାବୁଥାଏ ଟୁକୁ, କାହିଁକି ନା, ତାଙ୍କ ବାଡରେ ଗୋଟାଏ ନୂଆ କୂଅ ଖୋଳା ହେଉଥାଏ । ସେଇଥିପାଇଁ ଟୁକୁ ଓ ମୀନାକୁ ବାପା, ବୋଉ ମନା କରିଥାନ୍ତି ବାଡ଼ି ପଟକୁ ଯିବାକୁ । —ଏ ସମୟରେ କାହାର କାନ୍ଦ ଶୁଭିଲା···ଆରେ ! ଏ ତ ମୀନାର କାନ୍ଦ ପରି ଶୁଭୁଛି ! ମୀନା କଣ କୂଅ ଭିତରେ ପଡିଗଲା ନା କଣ ? ··· ଯା ଭାବି ଟୁକୁ ଦୌଡିଲା । ତା ପଛରେ ନେପୁ ବି ଦୌଡଥାଏ, କୂଅ ପାଖରେ ପହଞ୍ଚିଲାରୁ ଟୁକୁ ଦେଖିଲା— ସତକୁ ସତ ଦୁଷ୍ଟ ମୀନା କେତେବେଳେ କୂଅ ପାଖକୁ ଚୁପ୍ ଚୁପ୍ ଚାଲି ଆସିଛି । ବାପା କି ବୋଉ କେହି ସେ କଥା ଜାଣିନାହାନ୍ତି । ମାଟି ଗଦାଏ—ତା ଉପରେ ବସି ମୀନା କାନ୍ଦୁଥିଲା । ଟୁକୁକୁ ଦେଖି ତାର କୋହ ଆହୁରି ବଢ଼ିଗଲା । କଇଁ କଇଁ ହେଇ କାନ୍ଦିଲା ସେ । କଥା କଣ ବୁଝୁ ବୁଝୁ ଜଣାଗଲା ଯେ ଏଠି ବସି ମୀନା ତା ହାତର ସୁନା ଚୁଡ଼ିଟିକୁ କାଢ଼ି ଖେଳୁଥିଲା—ହଠାତ୍ ତା' ହାତର

ଚୁଡ଼ିଟି ଖସି ପଡ଼ି ଗଡ଼ି ଗଡ଼ି ଯାଇ ପଡ଼ିଗଲା ସେଇ ଖୋଲା ହୋଇଥିବା କୂଅ ଭିତରେ ! ପାଣି ନ ବାହାରିଥିଲେ ବି କୂଅଟା ବେଶ୍ ଗଭୀର ହୋଇଛି । ତା ଭିତରୁ କେମିତି ଅଣାଯିବ ସେ ଚୁଡ଼ି ? ବୋଉ ବରାବର ମନା କରନ୍ତି ମୀନାକୁ ହାତର ଚୁଡ଼ି ବାହାର କରି ଖେଳିବାକୁ । ମୀନା ମୋଟେ ତାଙ୍କ କଥା ଶୁଣିନି । ଏଇଲେ ମୀନା କଣ କରିବ ? ଚୁଡ଼ି ପଡ଼ି ଯାଇଛି ଜାଣିଲେ ତ ବୋଉ ଛାଡ଼ିବେ, ଏପଟେ ସେ ବାପାଙ୍କ କଥା ନ ମାନି ଏ କୂଅ ପାଖକୁ ଆସିଥିଲା ବୋଲି ଶୁଣିଲେ ବାପା ଆଉ ରଖିବେନି ମୀନାକୁ । ଦୁଃଖରେ, ଭୟରେ ମୀନାର ମୁହଁଟି କଳା ପଡ଼ି ଯାଉଥାଏ । ଏ କଥା ଶୁଣି ପ୍ରଥମେ ନିକୁର ମଧ୍ୟ ବୁଦ୍ଧି ହଜିଗଲା । ବାପା ବୋଉ ଶୁଣିଲାକ୍ଷଣି ଭୀଷଣ ରାଗିବେ । ଏ ପଟେ ସୁନାର ଜିନିଷଟା କୂଅ ଭିତରେ ପଡ଼ିଛି, ଏଇଲେ ତ କେହି କାଢ଼ି ପାରିବେନି, କାଲି ସକାଳେ ଯାଇ ମୂଲିଆମାନେ ଆସିଲେ କାଢ଼ିବେ । ହେଲେ ନୂଆ କୂଅ···ନନ୍ଦ ବସିନି ଆହୁରି । ଯଦି ରାତି ଭିତରେ ମାଟି ଭୁଷୁଡ଼ି ପଡ଼େ, ତା ହେଲେ ଆଉ ଚୁଡ଼ିଟିର ପତ୍ତା ମିଳିବନି ।

ମୀନା ତାର ଆର ହାତର ଚୁଡ଼ିଟାକୁ ହାତରେ ଆଉଁସି କାନ୍ଦୁଛି । ତାର ସେ କାନ୍ଦ ଦେଖି ନିକୁର ବି ଆଖି ଛଳ ଛଳ ହୋଇଗଲାଣି । ନେପୁ ବିଚରା ଏ ପଟକୁ ସେପଟ ଲସର ପସର ହେଉଛି । କଣ କରିବ କିଛି ଭାବି ପାରୁନି । ମୀନାର କାନ୍ଦ, ନିକୁର ଶୁଖିଲା ମୁହଁ ଦେଖି ତାକୁ ଭାରି ବ୍ୟସ୍ତ ଲାଗିଲାଣି । ହେଲେ କଥାଟା ଯେ କଣ ହୋଇଛି, ଏ ପର୍ଯ୍ୟନ୍ତ ସେ ବୁଝିପାରୁନି । ଏ ସମୟରେ ହଠାତ୍ ତାର ନଜର ପଡ଼ିଲା ମୀନାର ଖାଲି ହାତଟା ଉପରେ — ଚୁଡ଼ିଟା ସେଠି ନାହିଁ, ଆର ହାତର ଚୁଡ଼ିଟି ଠିକ୍ ଅଛି । ତେବେ

ଏ ଚୁଡ଼ିଟି କୁଆଡେ ଗଲା ? ନେପୁ ଦେଖିଲା, ମୀନା ତାର ହାତଟି ବଢ଼ାଇ କୂଅ ଭିତରଟାକୁ ଦେଖାଉଛି, ପୁଣି ଚୁଡ଼ିଟାକୁ ଆଙ୍ଗୁଳି କାନ୍ଦୁଛି । ନେପୁ ତାର କାନ ଦୁଇଟାକୁ ଠିଆ ଠିଆ କରି ଘଡ଼ିଏ ଆଖି ବୁଜି କଣ ଭାବିଲା । ତା'ପରେ ଚୁପ୍ କିନା ଗଲା କୂଅଟା ପାଖକୁ । ନ୍ଟୁକୁ ଦେଖିପାରିନି – ସେ ସେତେବେଳକୁ ମୀନାର ଆଖିରୁ ଲୁହ ପୋଛିବାରେ ବ୍ୟସ୍ତ ।

କୂଅର ଧାରକୁ ଯାଇ ଭିତରକୁ ଗୁହାଁଲା ନେପୁ । ସାଙ୍ଗେ ସାଙ୍ଗେ ମୀନାର ଚୁଡ଼ିଟା ଉପରେ ତାର ନଜର ପଡ଼ିଗଲା । ଯିମିତି ନଜର ପଡ଼ିଯାଇଛି, ନେପୁର ଆନନ୍ଦ ଆଉ ଦେଖେ କିଏ ? ସୁଡୁ ସୁଡୁ କିନା ତ ଓହ୍ଲେଇଗଲା କୂଅଟା ଭିତରକୁ !

କିଛି ସମୟ ପରେ ନ୍ଟୁକୁର ମନେ ପଡ଼ିଲା ନେପୁ କଥା । ଆଖ ପାଖକୁ ସେ ଗୁହାଁ ଦେଖିଲା – ନେପୁ ନାହିଁ । ନ୍ଟୁକୁ ଭାବିଲା··· ନିଶ୍ଚୟ କୋଉ ଗଛ ଉପରେ ଚଢ଼ିଛି ନେପୁ···ଆଉ ଟିକିଏ ପରେ ଅନ୍ଧାର ହୋଇଯିବ । ସେ ହେତୁ ନ୍ଟୁକୁ ଡାକ ପକାଇଲା, "ନେ··· ପୁ··· ଏଇ···ନେପୁ···ଆ···ଘରକୁ ଯିବା ।" ନେପୁ କୋଉ ଗଛ ଉପରୁ ଓହ୍ଲାଇବ ଦେଖିବା ପାଇଁ ନ୍ଟୁକୁ ଗଛ ଗୁଡାକ ଆଡେ ଗୁହାଁଛି, ହଠାତ୍ ମୀନା ଡ଼ାକ ପକାଇଲା, "ନ୍ଟୁକୁ ଭାଇନା, ଦେଖ୍ ଦେଖ୍···ନେପୁ କୁ··· ।"

ଚମକି ପଡ଼ି ନ୍ଟୁକୁ ଗୁହାଁଲା ବେଳକୁ କୂଅର ବନ୍ଧ ଉପରକୁ କଷ୍ଟେ ମଷ୍ଟେ ଉଠୁଛି ନେପୁ – ମୁହାଁରେ କାମୁଡ଼ି ଧରିଛି ମୀନାର ସୁନା ଚୁଡ଼ିଟାକୁ !! ଦୌଡି ଯାଇ ଅଧା ବାଟରୁ ନେପୁକୁ ଟେକି ଆଣିଲା ନ୍ଟୁକୁ । ଚୁଡ଼ିଟାକୁ ପାଇ ମୀନାର ଆନନ୍ଦ ଦେଖେ

କିଏ ? ଚୁଡ଼ିଟା ନିଜ ହାତରେ ଗଳାଇ ପକାଇଲା ସେ, ଆଉ ସବୁ ରାଗ ଭୁଲି ଯାଇ କୁକୁରର ହାତରୁ ଛଡ଼ାଇ ଆଣିଲା ନେପୁକୁ । କେତେ ଯେ ଆଦର କରି ପକାଇଲା ଆଉ କହିବାକୁ ନାହିଁ । ନେପୁର ଠିକ ମଥାଟା ଉପରେ ନିଜର କଅଁଳ ଗାଲଟି ରଖି କହିଲା, "ନେପୁରେ·· ଆଜିଠାରୁ ତୁ ମୋର ସବୁଠୁ ବଡ଼ ସାଙ୍ଗ···ଆଉ କେବେ ତୋ ସାଙ୍ଗେ ମୁଁ କଳି କରିବିନି···।"

ଖୁସିରେ କଳା କଳା ଆଖି ଦୁଇଟାକୁ ମିଟି ମିଟି କରି ନେପୁ ଚୁପ୍ ହୋଇ ଶୁଣୁଥିଲା ମୀନାର କଥା ।

ସେ ଦିନଠୁ ନେପୁ ଭାରି ସାଙ୍ଗ ହୋଇ ଯାଇଥିଲା ମୀନାର ।



# ଚାନ୍ଦ ରାଇଜରେ ଅନୁ

ତମମାନଙ୍କ ପରି ଅନୁ ବି ଭାରି ସୁନା ପିଲଟିଏ । ସେ ତା' ବାପା ବୋଉଙ୍କ କଥା ସବୁବେଳେ ମାନେ । ପଢ଼ାରେ ତାର ଭାରି ମନ । ନିତି ବୋଉଙ୍କ ପାଖରେ ବସି ପାଠ ପଢେ ।

ଖରାଦିନ । ଅଗଣା ମଝିରେ ବସି ଅନୁର ବୋଉ ଅନୁକୁ ଦୁଧ ଭାତ ଆଉ ଆଳୁ ଭଜା ଖୁଆଇ ଦେଉଥାନ୍ତି । କେଡେ ସୁନ୍ଦର ଜହ୍ନ ଆଲୁଅ ଚାରିଆଡେ ବିଞ୍ଛି ହୋଇ ପଡୁଛି । ଖିଆ ମଝିରେ ଅନୁ ଉପରକୁ ଚାହିଁ ଦେଲା, ଦେଖିଲା— ବଡ଼ ରୂପା ଥାଳିଟାଏ ପରି ଜହ୍ନ ମାମୁଁ ଦିଶୁଛନ୍ତି । ଧଳା ଧଳା ବଉଦ ଆକାଶର ଚାରିଆଡେ ଭାସି ବୁଲୁଛି ।

ଅନୁ କହିଲା, "ବୋଉ ମ, ଦେଖିଲ କେଡେ ସୁନ୍ଦର ଦିଶୁଛନ୍ତି ଜହ୍ନ ମାମୁଁ ···।" ବୋଉ ବି ଚାହିଁଲେ, କହିଲେ, "ଆ ଜହ୍ନ ମାମୁଁ ସରଗ ଶଶି, ମୋ ଅନୁ ହାତରେ ପଡ଼ରେ ଖସି···।"

ଅନୁ ଭାରି ଖୁସି ହୋଇଯାଇ କହିଲା, "ବୋଉ, ସତରେ କଣ ଜହ୍ନ ମାମୁଁ ମୋ ପାଖକୁ ଆସିବେ ? ଯଦି ଆସନ୍ତେ ତା

ହେଲେ ମୁଁ ତାଙ୍କ ସାଙ୍ଗେ ଖେଳନ୍ତି, ନହେଲେ, ବୋଉ, ମୁଁ ମିଛେ ଯିବ ଜହ୍ନ ମାମୁଁଙ୍କ ପାଖକୁ ।"

ବୋଉ କହିଲେ,"ମୋତେ ଛାଡ଼ି ରହି ପାରିବୁ ତ ଅନୁ ?"

ଅନୁ ତା'ର ଛୋଟ ମୁଣ୍ଡଟାକୁ ହଲାଇ କହିଲା, "ନାଇଁ ମ, ଚଞ୍ଚଳ ଯାଇ ଚଞ୍ଚଳ ଆଉ ଥରେ ତମ ପାଖକୁ ଚାଲିଆସିବ ଯେ··।"

ବୋଉ ଟିକିଏ ହସିଲେ । ଅନୁର ଖିଆ ସରିଥିଲା । ବୋଉ ତାର ହାତ ମୁହଁ ଧୋଇ ପୋଛିପୋଛି କରି ଦେଲେ ।

ସେ ଦିନ ରାତିରେ ଜହ୍ନମାମୁଁଙ୍କ କଥା ଭାବୁ ଭାବୁ ଅନୁକୁ କେତେବେଳେ ନିଦ ଲାଗିଗଲା । ନିଶବଦ ରାତି । ସମସ୍ତେ ଶୋଇ-ଗଲେଣି । ହଠାତ୍ ଅନୁର ମନେ ହେଲା—ତାଙ୍କ ଘରର ଚାରିଆଡ଼ କେଡେ ସୁନ୍ଦର ଆଲୁଅ ହୋଇ ଯାଇଛି । ଅନୁ ଝରକା ଆଡ଼କୁ ଚାହିଁ ଦେଇ ଏକାବେଳେକେ ଅବାକ୍— ଝରକା ସେ ପଟେ ଠିଆ ହୋଇଛନ୍ତି ଜହ୍ନମାମୁଁ !! ସତକୁ ସତ ତା ହେଲେ ସେ ଆସିଛନ୍ତି ! ଅନୁ ଧଡ଼ପଡ଼ ହୋଇ ଉଠିପଡ଼ି ଝରକା ପାଖକୁ ଦଉଡ଼ି ଗଲା । ହସ ହସ ମୁହଁରେ ଜହ୍ନମାମୁଁ ଚାହିଁ ରହିଛନ୍ତି । କି ସୁନ୍ଦର ସବୁ ପୋଷାକ ତାଙ୍କ ଦେହରେ ! ରଜାଙ୍କ ପୋଷାକ ଭଳି ଖାଲି ସୁନା ଜରି, ରୁପା ଜରିରେ କାମ କରା ପୋଷାକ । ହୀରାର ଅଳଙ୍କାର ସବୁ ଝକମକ କରୁଛି । ସବୁଠୁ ସୁନ୍ଦର ହୋଇଛି ମୁଣ୍ଡର ମୁକୁଟଟା । ବଡ଼ ସୁନ୍ଦର ଦିଶୁଛି ସତରେ ! ଆଉ ସେଥିରୁ ଇମିତି ସୁନ୍ଦର ଆଲୁଅ ବାହାରୁଛି ଯେ, ଚାରିଆଡ଼ ସେଇଥିରେ ଉଜ୍ଜ୍ୱଳ ହୋଇ-ଯାଇଛି । ଅନୁକୁ ଦେଖି ହାତ ବଢ଼େଇ ଜହ୍ନମାମୁଁ କହିଲେ, "ଅନୁ ମ, ଆ — ତୁ ପରା ମୋ ସାଙ୍ଗରେ ଖେଳିବୁ କହୁଥିଲୁ,

ଚାଲ୍ ମୋ ସାଙ୍ଗେ ମୋ ରାଇଜକୁ । ଡେରେ ମୋ ରାଇଜକୁ ନେଇ ବୁଲେଇ ଆଣିବ ।"

ଅନୁ ଖୁସିରେ ଡେଇଁ ପଡ଼ିଲା ଜହ୍ନମାମୁଁଙ୍କ କୋଳକୁ । ଟିକିଏ ଦୂରରେ ଜହ୍ନମାମୁଁଙ୍କ ରଥ ଥୁଆ ହୋଇଥିଲା । ଦେଖିବାକୁ ଧଳା—ବଡ଼ ସୁନ୍ଦର । ତେବେ ସେଥିରୁ ବି ସିମିଡ଼ ଝରଣ ବାହାରୁଛି । ଜହ୍ନମାମୁଁଙ୍କ ସାଙ୍ଗେ ଯାଇ ଅନୁ ସିମିଡ଼ ରଥରେ ବସିଲା, ରଥଟା ତ ତା ମନକୁ ଉଡ଼ିବାକୁ ଲାଗିଲା । ଫୁଲୁ ଫୁଲିଆ ପବନ ବହୁଛି—ସାନ ସାନ ମେଘ ଗୁଡ଼ାକୁ ହାତ ବଢ଼େଇ ଅନୁ ଛୁଇଁ ଦେଉଛି ଯେତେବେଳେ ମନ ହଉଛି ସେତେବେଳେ । ଉଡ଼ି ଉଡ଼ି ଯିବାକୁ ଭାରି ମଜା ଲାଗୁଛି ଅନୁକୁ । ରଥଟା ଉପରକୁ ଉପରକୁ ଉଠୁଛି । ହେଲେ ବେଳକୁ ବେଳ ଟିକେ ବେଶୀ ବେଶୀ ଶୀତ ହେଲାପରି ଜଣା ପଡୁଛି । ହଠାତ୍ ଜହ୍ନମାମୁଁ କଣ କଲେ ନା, ତାଙ୍କ ଥଳି ଭିତରୁ ଭାରି ସୁନ୍ଦର ଜାମାଟିଏ ବାହାର କରି ଅନୁକୁ ପିନ୍ଧାଇ ଦେଲେ । ଜାମାଟି ଭାରି ମୋଟା । ପିନ୍ଧିଲାକ୍ଷଣି ବେଶ୍ ଉଷୁମ ଲାଗିଲା । ଅନୁ ପାଇଁ ମୋଜା, ଟୋପି, ହାତ ମୋଜା, ସବୁ ବାହାରିଲା ଜହ୍ନମାମୁଁଙ୍କ ଥଳି ଭିତରୁ । ଜହ୍ନମାମୁଁ ଅନୁକୁ ବୁଝାଇ ଦେଲେ ଯେ ତାଙ୍କ ରାଇଜରେ ଭାରି ଥଣ୍ଡା—ଏ ଜାମା ନ ପିନ୍ଧିଲେ ଅନୁ ସେ ଥଣ୍ଡା ସମ୍ଭାଳି ପାରିବନି ।

କେତେବେଳ ଚାଲିବା ପରେ ରଥ ଯାଇ ଜହ୍ନରାଇଜରେ ପହଞ୍ଚିଗଲା । ରଥରୁ ଓହ୍ଲାଇ ଅନୁ ଚାଲିଲା ଜହ୍ନମାମୁଁଙ୍କ ସାଙ୍ଗେ ସାଙ୍ଗେ । ଚାରିଆଡ଼େ ଧଳା ତୁଳା ଭଳି ମେଞ୍ଚା ମେଞ୍ଚା ବରଫ । ଭୂଇଁରେ ଚାଲିଲା ବେଳକୁ ପାଦ ଟିକିଏ ଟିକିଏ ଭିତରକୁ ପଶିଯାଉଛି

ସେ ନରମ ବରଫ ଭିତରେ । ଅନୁ ସେଇ ଆଶ୍ଚର୍ଯ୍ୟ ଦେଶକୁ ଦେଖି ଦେଖିକା ଯାଉଛି । କେତେ ବାଟ ଗଲାପରେ ପଡ଼ିଲା ଜହ୍ନମାମୁଁଙ୍କ ଘର । ଏତେ ସୁନ୍ଦର ଘର ଜୀବନରେ ଅନୁ ଆଉ କେବେ ଦେଖିନି । ସ୍ଫଟିକର ଖମ୍ବ ସବୁ—ଗୃହଆଡେ ଖାଲି ଧଳା ଚକ୍ ଚକ୍ କରୁଛି । ଜହ୍ନମାମୁଁଙ୍କ ହାତ ଧରି ଅନୁ ପଶିଲା ସେଇ ଘର ଭିତରେ । ଗୃହପଟେ କେତେ ସୁନ୍ଦର ସବୁ କାମ କରା ହୋଇଛି, ହେଲେ କୋଉଠି ଅନୁ ତା' ଭଳି ଛୋଟ ପିଲାଟେ କି ବଡ଼ ମଣିଷ କାହାକୁ ଦେଖିଲାନି । ଅନୁ ସେଠୁ ଜହ୍ନମାମୁଁଙ୍କୁ ପଚାରିଲା, "ଜହ୍ନମାମୁଁ, ତମ ରାଇଜରେ କଣ କେହି ମଣିଷ ନାହାନ୍ତି ?"

ଜହ୍ନମାମୁଁ ଶୁଖିଲା ହସଟିଏ ହସି କହିଲେ,"ନାଇଁ ଲୋ ଅନୁ, ମୋ ରାଇଜରେ ତୋ ଭଳି କେହି ପିଲା ଛୁଆ ନାହାନ୍ତି, କି ମଣିଷ ନାହାନ୍ତି । ସେଇଥିପାଇଁ ତ ପୃଥିବୀର ପିଲାମାନଙ୍କୁ ମୁଁ ଭାରି ଭଲପାଏ । ଭାରି ଆଦର କରେ । ସେଇଥିପାଇଁ ପରା ତାଙ୍କ ସମସ୍ତଙ୍କର ମୁଁ ମାମୁଁ ।"

ଅନୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ମାମୁଁ ମ, ଏତେ ବଡ଼ ରାଇଜରେ ତମେ ତା'ହେଲେ ଏକା ଅଛ ?"

ଜହ୍ନମାମୁଁ କହିଲେ, "ନାଇଁ, ଆହୁରି କେତେ ସବୁ ଜୀବଜନ୍ତୁ ଅଛନ୍ତି, ତେବେ ସେମାନେ ପୃଥିବୀର ଜୀବଜନ୍ତୁଙ୍କ ଠାରୁ ଢେର୍ ଅଲଗା··· ।"

ଅନୁ ପଚାରିଲା, "ତମକୁ ଏଠି ରହିବାକୁ ଡର ଲାଗୁନି ମାମୁଁ ?" ଜହ୍ନମାମୁଁ ହସି ଦେଇ ଅନୁର ପିଠିଟାକୁ ଆଉଁସି

ଦେଲେ । କହିଲେ "ତୁ ତା ହେଲେ ଏଠି ମୋ ପାଖରେ ରହି ଯା ଅନୁ । ମୋ ସାଙ୍ଗେ ଖେଳିବୁ । ଆମେ ଦୁହେଁ ସାଙ୍ଗ ହୋଇ ରହିବା । ମତେ ତା'ହେଲେ ଆଉ ଡର ଲାଗିବନି ।"

ଅନୁ ଟିକିଏ ଭାବିଲା, ସତରେ ଜହ୍ନମାମୁଁଙ୍କୁ ଏଠି ଏକା ରହିବାକୁ କେତେ ଖରାପ ଲାଗୁଥିବ । କାହା ସଙ୍ଗେ କଥା ପଦେ ବି କହିବାକୁ କେହି ନାହିଁ । ଅନୁ ରହିଯାଆନ୍ତା, ହେଲେ ତା ବୋଉ ···ବୋଉ ତ ଭାରି ବ୍ୟସ୍ତ ହେବ । ଏପଟେ ଅନୁ ବି ବୋଉଙ୍କୁ ଛାଡି ରହି ପାରିବନି କେଉଁଠି । ଭାବି ଭାବି ଶେଷକୁ ଅନୁ ମୁଣ୍ଡ ହଲାଇଲା, "ନାଇଁ, ଜହ୍ନମାମୁଁ, ମୁଁ ବୋଉକୁ ତ ଛାଡି ରହି ପାରିବନି ଜମା । ଏମିତି ମଝିରେ ମଝିରେ ବୁଲି ଆସୁଥିବି, ତମେ ପୁଣି ମତେ ଛାଡ଼ି ଦେଇ ଆସୁଥିବ । ନ ହେଲେ, ଚାଲ, ତମେ ଯାଇ ଆମରି ସାଙ୍ଗେ ରହିବ ।"

ଅନୁର କଅଁଳ ଗାଲକୁ ଆଦରରେ ଟିକିଏ ଚିପି ଦେଇ ଜହ୍ନମାମୁଁ କହିଲେ, "ବୋକା ଝିଅ, ମୁଁ ସେଠି ରହିଲେ ଏଠି ରାଇଜ ଚଳେଇବ କିଏ ?"

ସତରେ ତ ! ଜହ୍ନମାମୁଁ ପୃଥିବୀରେ ରହିଲେ ଏଠି କିଏ ତାଙ୍କ ରାଇଜକୁ ଚଳାଇବ ? ହେଲେ ଏତେ ବଡ଼ ରାଇଜଟାରେ ଜହ୍ନମାମୁଁ ଏକୁଟିଆ ରହିଥିବେ ? ଅନୁ ପୁଣି ଚାଲିଯିବ । ଜହ୍ନମାମୁଁଙ୍କୁ ଏକୁଟିଆ ଏଠି ଛାଡ଼ି ଯିବାକୁ ଅନୁର ମନ ଜମା ମାନୁ ନ ଥାଏ । ଅନୁ ବଡ ଅଡୁଆରେ ପଡିଲା ।

ତାକୁ ଏମିତି ଚିନ୍ତା କରିବା ଦେଖି ଜହ୍ନମାମୁଁ କହିଲେ, "ଅନୁ, ତୁ ଏତେ ଭାବ୍ ନାତ । ତମ ପୃଥିବୀର ଲୋକେ ଏଇ ଚନ୍ଦ୍ର

ଘରକୁ ଆସିବାକୁ ଠିକ୍ କରି ସାରିଲେଣି । ଆଉ ଅଳପ ଦିନ ପରେ ଗୋଟାଏ ପ୍ରକାର ରକେଟ୍ ଜାହାଜ ତିଆରି କରି ସେମାନେ ଏଠାକୁ ଆସିବେ — ।"

ଜହ୍ନମାମୁଁଙ୍କ କଥା ଶୁଣି ଅନୁ ବଡ ଖୁସି ହୋଇଯାଇ କହିଲା, "ସତେ ଜହ୍ନମାମୁଁ ? ତମ ଦେଶକୁ ଆମ ଦେଶର ଲୋକେ ଆସି ରହିବେ ? ତା' ହେଲେ ତ ବାପା ବୋଉ ସମସ୍ତଙ୍କୁ ଧରି ମୁଁ ତମ ଦେଶକୁ ଚାଲି ଆସିବି । ଆଉ ତମକୁ ଛାଡି ଜମା ଯିବନି ।"

ଅନୁ କଥା ଶୁଣି ଜହ୍ନମାମୁଁ ବି ଭାରି ଖୁସି । ଦୁହେଁ ବସି ଏଣୁ ତେଣୁ ଗପ କରିବାକୁ ଲାଗିଲେ । ଶେଷରେ ମାମୁଁ କହିଲେ, "ଅନୁ, ତତେ ତ ଭୋକ ହେବଣି । ଖାଇବା ପାଇଁ ଆଣି ଦେଉଛି ।"

ସତରେ ଅନୁକୁ ସେତେବେଳକୁ ଭାରି ଭୋକ କରୁଥିଲା, ହେଲେ ଲାଜରେ କିଛି କହୁ ନ ଥାଏ । ଜହ୍ନମାମୁଁ ପଚାରିବାରୁ ମୁହଁଟି ତଳକୁ ପୋତି 'ହଁ' କହିଲା ।

ମାମୁଁ କହିଲେ, "ବେଶ୍, ତା' ହେଲେ ସୁନା ଝିଅଟି ପରି ଏଠି ବସି ଥାଆକୁ, ମୁଁ ଯାଉଛି ଭିତର ଘରୁ ତୋ ପାଇଁ ଜଳଖିଆ କିଛି ନେଇ ଆସିବି । ଆଉ ଦେଖ୍, ଏ ଘର ଛାଡି କୁଆଡେ ଯିବୁନି । ଚୁପ୍ କିନା ଏଠି ବସିଥିବୁ ।"

ଅନୁ ମୁଣ୍ଡ ହଲାଇଲା । ଜହ୍ନମାମୁଁ ଗଲେ ।

ଜହ୍ନମାମୁଁ ଚାଲିଗଲା ପରେ ଅନୁକୁ ଆଉ ବସି ରହିବାକୁ ଭଲ ଲାଗିଲାନି । ଭାବିଲା ଘର ଭିତରେ ଟିକିଏ ବୁଲି ଚାଲି ଦେଖିବ ।

ଜହ୍ନମାମୁଁ ସିନା ବାହାରକୁ ଯିବାକୁ ମନା କରିଛନ୍ତି । ଘର ଭିତରେ ବୁଲିଲେ କଣ କ୍ଷତି ? ଅନୁ ସେଠୁ ଉଠି ଘର ଭିତରଟା ଦେଖି ଦେଖି ଝରକା ପାଖରେ ଆସି ପହଞ୍ଚିଲା । ଝରକା ବାଟେ ବାହାରକୁ ଚାହିଁଲା କ୍ଷଣି ତା ମନଟା ବଡ ଖୁସି ହେଇଗଲା—ଝରକା ସେ ପଟେ ବଡ ବଗିଚାଟେ, ଆଉ ସେ ବଗିଚାରେ ବଡ ସୁନ୍ଦର ସବୁ ଫୁଲ ଫୁଟିଛି । ସିମିତି ଫୁଲ ଅନୁ କୋଉଠି ଦେଖିନି ଆଜି ପର୍ଯ୍ୟନ୍ତ । ଧଳା ରଙ୍ଗର ଜାଡ ଜାଡକା ଫୁଲ ବଢ଼େଇ ହୋଇ ଯାଇଛି । ଚନ୍ଦ୍ରର କିରଣ ଭଳି ଝକମକ କରୁଛି ତାର ପାଖୁଡ଼ା ଗୁଡ଼ାକ । ଇମିତି ଆଶ୍ଚର୍ଯ୍ୟ ରକମର ଫୁଲ ଦେଖି ଅନୁ ଭାବିଲା, ଗୋଟିଏ ସେଥିରୁ ତୋଳିବ ଆଉ ବୋଉକୁ ତାର ନେଇ ଦେଖାଇବ ଜହ୍ନମାମୁଁ ଦେଶର ସେ ନୂଆ ପ୍ରକାର ଫୁଲକୁ । ବାପା, ବୋଉ ଅବାକ୍ ହେଇଯିବେ । ଅନୁ ଯ୍ୟା ଘରର ବଗିଚା ଆଡକୁ ଯୋଉ ଦୁଆରଟା ଖୋଲା ଥିଲା, ସେଇ ବାଟେ ଓହ୍ଲାଇଗଲା ବଗିଚା ଭିତରକୁ । ଫୁଲର ବଣ କହିଲେ ଚଳେ । ଅନୁ ଆଗକୁ ଚାହିଁଲା—ଟିକିଏ ଦୂରକୁ ଆହୁରି ବଡ ବଡ ଫୁଲ ଫୁଟିଛି । ଅନୁ ଚାଲିଲା ସେଥିରୁ ଗୋଟାଏ ତୋଳିବାକୁ । ସେଠି ପହଞ୍ଚିଲା ପରେ ଦେଖିଲା ଆଉ ଟିକିଏ ଦୂରକୁ ଆହୁରି ବଡ ବଡ ଫୁଲ ଅଛି । ଅନୁ ସେଠୁ ସେ ଫୁଲରୁ ଗୋଟାଏ ତୋଳିବାକୁ ମନ କଲା । ଇମିତି ଟିକିଏ ଟିକିଏ ଆଗକୁ ଯାଉ ଯାଉ ଅନେକ ଦୂରକୁ ଚାଲି ଆସିଲା ଅନୁ । ହଠାତ୍ କଣ ଯେ ହେଲା, ଚାରିଆଡେ ଧୂଆଁ ଭଳି କୁହୁଡି ଘୋଟିଗଲା । ଅନୁକୁ ଆଉ କିଛି ଦିଶିଲାନି । ବାଟ ଦିଶିଲାନି କି ଫୁଲ ବଗିଚା ଦିଶିଲାନି, ଆଉ ଜହ୍ନମାମୁଁଙ୍କ ଏତେ ବଡ ଘରଟା — ସେ ବି ଦିଶିଲାନି । ଅନୁ ଅବାକ୍ ହେଇଗଲା । ଅତି କଷ୍ଟରେ ଖାଲି ଅନୁମାନ କରି ପଛକୁ ଫେରି ସେ ଚାଲିଲା । ବୁଦା ବୁଦା ବରଫ

ସବୁ ବର୍ଷା ହେଲ ଭଲ ହେଉଛି । ଭାଗ୍ୟକୁ ଜହ୍ନମାମୁଁ ସେ କୋଟି ଆଉ ଜାମା ଅନୁକୁ ପିନ୍ଧାଇ ଦେଇଥିଲେ, ନ ହେଲେ ଏ ଥଣ୍ଡାରେ ଅନୁର ଦେହଟା ତ ବରଫ ହେଇ ଯାଇଥାନ୍ତା ।

ଅନେକ ଦୂର ଆସିଲା ପରେ ଆସ୍ତେ ଆସ୍ତେ କୁହୁଡ଼ି ପତଳା ହେଇ ଆସିଲା । ଆଉ କିଛି ବାଟ ଗଲା ପରେ ଚାରିଆଡ଼ ପରିଷ୍କାର ଦେଖାଗଲା । ସେଠି ଆଉ କୁହୁଡ଼ି ନାହିଁ । ଅନୁ ଚାହିଁ ଦେଖିଲା, ସେ ଗୋଟାଏ ଖୋଲା ଜାଗାରେ ଠିଆ ହେଇଛି । କୋଉଠି ଜହ୍ନମାମୁଁଙ୍କ ଘରର ଚିହ୍ନବର୍ଣ୍ଣ ସୁଦ୍ଧା ନାହିଁ । ବଡ଼ ଅଡୁଆରେ ପଡ଼ିଲା ଅନୁ । ଏବେ ସେ କଣ କରିବ ? ନୂଆ ଜାଗାରେ କିମିତି ଜାଣିବ କୋଉଠି ଜହ୍ନମାମୁଁଙ୍କ ଘରଟା ଅଛି ? ଜହ୍ନମାମୁଁଙ୍କ କଥା ନ ମାନିବାର ଫଳ ହାତେ ହାତେ ସେ ପାଇଲା । ଇସ୍... କାହିଁକି ସେ ମାମୁଁଙ୍କ କଥା ନ ମାନି, ଘର ଭିତରେ ଚୁପ୍ ହେଇ ନ ବସିଲା ? କଣ କହିବେ ଜହ୍ନମାମୁଁ ? କହିବେ ଅନୁଟା ବଡ଼ ଅମାନିଆ ଦୁଷ୍ଟ ଝିଅଟେ—କମା କଥା ଶୁଣୁନି । ଏଇଲେ ସେ ଆଉ ଥରେ ଜହ୍ନମାମୁଁଙ୍କ ପାଖକୁ ଯିବ ବା କିମିତି ? ସେ ତ ସେ ପଟେ ଅନୁକୁ ଖୋଜି ଖୋଜି ହଇରାଣ ହେଉଥିବେ ।

ଅନୁ ଇମିତି ସବୁ ଭାବୁଥାଏ ଆଉ ଗୋଟି ଗୋଟି ପାଦ ପକାଇ ଆଗକୁ ଚାଲିଥାଏ । ଏଣେ ଭୋକରେ ତାର ପେଟ ଜଳିଲାଣି ସେତେବେଳକୁ !

ଆଉ ଟିକିଏ ବାଟ ଗଲା ପରେ ଅନୁ ଦେଖିଲା ଟିକିଏ ଦୂରରେ ଗୋଟାଏ ପାହାଡ଼ ଭଳିଆ ଜାଗା ଦିଶୁଛି । ଗୋଟାଏ ବୁଦ୍ଧି ଦିଶିଲା—ସେ ଠିକ୍ କଲା ପାହାଡ଼ ଉପରେ ଚଢ଼ିବ, ତା ହେଲେ

ହୁଏତ ଜନ୍ତୁମାନଙ୍କ ଘରଟାକୁ ଦେଖି ପାରିବ । ଏହା ଭାବି ଅନୁ ସେଇ ପାହାଡକୁ ଲକ୍ଷ୍ୟ କରି ଚାଲିଲା । ଶେଷରେ କଷ୍ଟେମଷ୍ଟେ ଯାଇ ପାହାଡଟା ଉପରେ ଚଢ଼ିଲା ମଧ୍ୟ । ସବୁ ଉପରେ ଯାଇ ସେଇକ୍ଷଣି ଗୋଡ ଦେଇଛି, ଅନୁ ଦେଖିଲା—ଇରେ ବାବା ! ପାହାଡ଼ଟା ହଲୁଛି । ଅନୁ ବିଚାରିଲା, କି ଆଶ୍ଚର୍ଯ୍ୟ ଦେଶ ମ ଏଇଟା ! ଏଠି କଣ ପାହାଡ ହଲୁଛି ! କିଛି ସମୟ ପରେ ଅବାକ୍ ହୋଇ ସେ ଦେଖିଲା, ଆସ୍ତେ ଆସ୍ତେ ପାହାଡଟା ଚାଲୁଛି ! ଘଡ୍ ଘଡ୍ ସର୍ ସର୍ ଶବ୍ଦ ସବୁ ହଉଛି । ଅନୁ ଏଥର ଭଲକରି ଚାହିଁ ଦେଖିଲା ତଳକୁ । ଦେଖିଲା ବେଳକୁ ସେଇଟା ପାହାଡ ନୁହେଁ ଗୋଟାଏ ଅଦ୍ଭୁତ ପ୍ରକାର ଜନ୍ତୁ । ପାହାଡ ଭଳି ପିଠିଟା ଅନେକ ଉଚ୍ଚ । ଏପଟେ ବହୁତ ଲମ୍ବା ଲାଞ୍ଜଟାଏ ଅଛି । ମୁହଁଟା ଠିକ୍ କୁମ୍ଭୀର ମୁହଁ ଭଳି ସରୁଆ ହୋଇ ଲମ୍ବା । ଟେଣ୍ଟିଆ ବଲ୍ ଭଳି ଯୋଡାଏ ଆଖି । ଜନ୍ତୁ ଟାଇଗର ଡ୍ରାଗନ୍ ସେଇଟା । ଲାଞ୍ଜ ମୁହଁ ପେଟ ତଳେ ଜାକି ବେଶ୍ ଆରାମରେ ଶୋଇଥିଲା ସେ, ତେଣୁ ଅନୁ ପ୍ରଥମେ ତାର ରୂପ ଦେଖି ପାରିନି । ଯିମିତି ତା ପିଠି ଉପରେ ଅନୁ ଚଢ଼ିଛି, ତା ପିଠିରେ ସାଲୁ ସାଲୁ ଲାଗିଲାକ୍ଷଣି ସେ ଉଠି ପଡ଼ିଲା । ଏ ଅବସ୍ଥାରେ ଅନୁ ଆଉ ଯିବ କୁଆଡ଼କୁ ! ତଳକୁ ଓହ୍ଲାଇଲେ ଡ୍ରାଗନ୍ ଯଦି ଦେଖିଦେବ ନା ତା'ହେଲେ ସଇଲା କଥା । ତେବେ ଅନୁଟା ବେଶ୍ ସାହସୀ ଝିଅଟେ, ସେ ଚୁପ୍ ହୋଇ ଡ୍ରାଗନ୍‌ର ପିଠିଟାକୁ ଜାବୁଡ଼ି ଧରି ବସି ରହିଲା । ଡ୍ରାଗନ୍ ଏଣେ ଚାଲୁଥାଏ । ତା ପିଠିଟା ଏତେ ଉଚ୍ଚ ଯେ ସେ ଆଉ ଅନୁକୁ ଦେଖି ପାରିଲାନି । ହାତୀ ପିଠି ଉପରେ ବସି ଗଲାପରି ଅନୁ ବେଶ୍ ଆରାମରେ ତା ପିଠି ଉପରେ ବସି ଯିବାକୁ ଲାଗିଲା । ବାଟରେ କେତେ ଗହ୍ୱରିଆ ନାଳ ସବୁ ପଡିଲା । ଡ୍ରାଗନ୍ ଅତି ସହଜରେ ନାଳର ଏ କୂଳରେ

ଗୋଟାଏ ପାଦ ତ ସେ କୂଳରେ ଗୋଟାଏ ପାଦ ପକାଇ ଚାଲି ଯାଉଥାଏ । ଅନେକ ବାଟ ସେ ଦୁହେଁ ଚାଲି ଆସିଲେ । ଏଥର ଟିକିଏ ଚିନ୍ତିତ ହୋଇ ପଡ଼ିଲା ଅନୁ — ଇମିତି ଜୀବଟାର ପିଠିରେ ବସି ସେ କଣ ଦିନ ରାତି ଚାଲିଥିବ ନା କଣ ? ଏ ପଟେ ଓହ୍ଲାଇବ ବା କିମିତି ? ଏତିକିବେଳେ ବୋଉଙ୍କ କଥା ମନେ ପଡ଼ିଲା ତାର । ପୃଥିବୀରେ ତ ଅନୁ ଆସିଲା ବେଳକୁ ରାତି ହୋଇଥିଲା, ସକାଳ ପହି ହୋଇଥିବ ବୋଉ ନିଦରୁ ଉଠି ଅନୁକୁ ନ ଦେଖି ବ୍ୟସ୍ତ ହୋଇ ପଡ଼ିବେଣି । ଏଣେ ଜହ୍ନମାମୁଁ ବି ଖୋଜୁଥିବେ ।

ଅନୁ ଇମିତି କେତେ କଥା ଭାବୁଛି, ଦେଖିଲା — ଆଗରେ ଗୋଟାଏ ଗଛ । ଖୁବ୍ ବଡ଼—ଖୁବ୍ ଉଚ୍ଚ । ଜୀବଟି ସେ ଗଛ ପାଖ ହୋଇଗଲା ବେଳକୁ ଗଛର ଡାଳଯାକ ସବୁ ତା ପିଠିରେ ଘୋଷାରି ହୋଇ ଯାଉଥାଏ । ଅନୁ ହଠାତ୍ ବୁଦ୍ଧି କରି ଚଟ୍‌କିନା ଗୋଟାଏ ଡାଳ ଧରି ଗଛ ଉପରକୁ ଚାଲି ଆସିଲା । ଡ୍ରାଗନ୍ ଜମା ଜାଣିପାରିଲାନି । ସେ ତା ବାଟେ ବାଟେ ଚାଲିଗଲା । ବେଶ୍ ମୋଟା ଡାଳଟାଏ ଦେଖି ଅନୁ ତା ଉପରେ ବସି ଚାରିଆଡ଼କୁ ଚାହିଁଲା ଜହ୍ନମାମୁଁଙ୍କ ଘର କୋଉଠି ଦିଶୁଛି କି ନାହିଁ ଦେଖିବାକୁ । ସତକୁ ସତ ଏଥର ଦିଶିଲା ଜହ୍ନମାମୁଁଙ୍କ ଘରଟା । ଅଲପବାଟ ହେଲେ ବି ଅନୁ ଏବେ ଏ ବଡ଼ ଗଛଠାରୁ ତଳକୁ ଓହ୍ଲାଇବ କିମିତି ? ଓହ୍ଲାଇଲେ ସିନା ଜହ୍ନମାମୁଁଙ୍କ ଘରକୁ ଯିବ । ଏ ଚାନ୍ଦ ରାଇଜକୁ ଆସି କି ହଇରାଣରେ ପଡ଼ିଲା ଅନୁ !

ମନେ ମନେ ଯେତେବେଳେ ଭାରି ବ୍ୟସ୍ତ ହେଉଛି ସେ, ହଠାତ୍ ଶୁଣିଲା, "ଅ···ନୁ···ଅନୁ··· !"

ଅନୁ ଚମକି ପଡ଼ିଲା, ଆରେ ! ଏ ତ ଜହ୍ନମାମୁଁଙ୍କ ଡ଼ାକ ।
ସାଙ୍ଗେ ସାଙ୍ଗେ ସେଇଠୁ ପାଟି କରି ଡ଼ାକ ପକାଇଲା ସେ, "ଜହ୍ନ-
ମାମୁଁ... ମୁଁ ଏଇଠି ଏ ବଡ଼ ଗଛଟା ଉପରେ ବସିଛି । ଇଆଡ଼କୁ
ଆସ ତମେ ... ।"

ଅନୁର ପାଟି ଶୁଣି ଜହ୍ନମାମୁଁ ଦୌଡ଼ି ଆସିଲେ ଗଛ
ପାଖକୁ । ଜହ୍ନମାମୁଁଙ୍କ ସାହାଯ୍ୟରେ ଅନୁ ଓହ୍ଲାଇଲା ତଳକୁ ।
ଏତେବେଳ ହେଲା ଅନୁକୁ ଖୋଜି ଖୋଜି ଜହ୍ନମାମୁଁ ଏକା-
ବେଳେ ହାଲିଆ ହେଇ ଯାଇଥିଲେ । ତାକୁ ଦେଖିଲାକ୍ଷଣି ତାଙ୍କୁ
ଏତେ ଖୁସି ଲାଗିଲା ଯେ ସେ ଆଉ ଅନୁକୁ ଗାଳି ଦେବା କଥା
ଭୁଲି ଗଲେ ।

ଜହ୍ନମାମୁଁଙ୍କ କାନ୍ଧରେ ମୁହଁ ଲୁଚେଇ ଅନୁ ଡ଼ରି ଡରି
କହିଲା, "ମାମୁଁ ମୁଁ, ଆଉ କେବେ ଦୁଷ୍ଟାମି କରିବିନି କି ତମ
କଥା ନ ମାନି ବାହାରକୁ ଯିବିନି ।"

ଜହ୍ନମାମୁଁ ଆଦର କରି ଅନୁର ମୁହଁଟିକୁ ଆଉଁସି ଦେଲେ ।
ଅନୁ ସେଠୁ ଜହ୍ନମାମୁଁଙ୍କ ସାଖ ହେଇ ଗୁଲୁ ଗୁଲୁ ତାର କଥା-
ଗୁଡ଼ାକ ସବୁ କହିଲା; ସେ ଜୀବଟା କଥା ବି କହିଲା ।

ଜହ୍ନମାମୁଁ କହିଲେ, "ସେଇଥିପାଇଁ ପରା ମୁଁ ତତେ ଘରୁ
ବାହାରିବାକୁ ମନା କରୁଥିଲି । ଡ୍ରାଗନ୍‌ଗୁଡ଼ାକ ବଡ଼ ଭୀଷଣ,
ଦେଖିଲାକ୍ଷଣି ଗିଳି ଦେବେ । ଆଉ ମଧ୍ୟ ଏଠି ପ୍ରାୟ ସବୁ
ବେଳେ ବରଫ ଝଡ଼ ହୁଏ ।"

ଘରେ ପହଞ୍ଚିଲା ପରେ ଅନୁର ହାତ ମୁହଁ ଧୋଇ ଦେଇ ଜହ୍ନମାମୁଁ କେତେ ପ୍ରକାର ନୂଆ ପିଠା ଦେଲେ ଖାଇବାକୁ । ଅନୁକୁ ତ ବଡ ଭୋକ କରୁଥିଲା, ସେ ସବୁତକ ଖାଇ ଦେଲା । ସେଇଠୁ ଜହ୍ନମାମୁଁ କଣ କଲେ ନା, ତାକୁ ତାଙ୍କ ରଥରେ ବସାଇ ଆଉ ଥରେ ନେଇ ବୁଲିଗଲେ ପୃଥିବୀ ଆଡେ ।

ସପନରେ ଇମିତି ଜହ୍ନ ଟଇଳକୁ ଯାଇ ଫେରି ଆସିଲା ଅନୁ !



Printed by B. Pathi at Sri Printers, Puri. 1963